ଭାରତରତ୍ନ ସିରିଜ୍



# ଡ. ରାଜେନ୍ଦ୍ର ପ୍ରସାଦ



ଭାରତରତ୍ନ ସିରିଜ୍

# ଡଃ ରାଜେନ୍ଦ୍ର ପ୍ରସାଦ



ରଘୁନାଥପ୍ରସାଦ ମହାପାତ୍ର

ଭାରତରତ୍ନ ସିରିଜ୍—ଡ : ରାଜେନ୍ଦ୍ର ପ୍ରସାଦ

ଲେଖକ :
ରତ୍ନନାରାୟଣ ମହାପାତ୍ର
ସୂତାହାଟ, କଟକ ୭୫୩୦୦୧

ପ୍ରକାଶକ :
ଶିକ୍ଷା ଶ୍ରୀ,
କେ. କେ. ମିଶ୍ର ଏଣ୍ଡ୍. କୋ.
ବାଙ୍କାବଜାର, କଟକ-୭୫୩୦୦୨

ପରିବେଷକ :
ବୁକ୍ସ ଇଣ୍ଟରନାସ୍‌ନାଲ,
ବାଙ୍କାବଜାର, କଟକ-୭୫୩୦୦୨ ଏବଂ
୨୧ ସୁପର ମାର୍କେଟ, ଉଦିତ ନଗର, ରାଉରକେଲା

ତୃତୀୟ ପ୍ରକାଶ :
ମଇ ପହିଲା, ୧୯୮୫

ମୁଦ୍ରକ :
ସ୍ୱର୍ଣ୍ଣମୟୀ ପ୍ରିଣ୍ଟର୍ସ,
ବାଖରାବାଦ, କଟକ-୭୫୩୦୦୨

ମୂଲ୍ୟ :
ପାଞ୍ଚ ଟଙ୍କା

ବିଚିତ୍ର ଏ ଭାରତ ଦେଶ । ମାନବ ସଭ୍ୟତାର ସମସ୍ତ ମତବାଦକୁ ସମନ୍ୱିତ କରି ଭାରତରେ ଏକ ସୁସଂହତ ସମାଜ ଏବଂ ବ୍ୟକ୍ତିଜୀବନ ଶହ ଶହ ବର୍ଷ ଧରି ଗଢ଼ି ଉଠିଛି । ବନବାସୀ ଶବର, ବସ୍ତୁବାଦୀ ଦ୍ରାବିଡ଼ ଏବଂ ଅଧ୍ୟାତ୍ମବାଦୀ ଆର୍ଯ୍ୟ ସଭ୍ୟତାର ସମନ୍ୱୟରେ ଜମ୍ବୁଦ୍ୱୀପ-ଭାରତ ମାନବ ସଭ୍ୟତାର ଇତିହାସରେ ଏକ ଉଜ୍ଜ୍ୱଳ ସ୍ୱାକ୍ଷରର ନିଦର୍ଶନ । ମହାନ୍ ରୋମୀୟ ଏବଂ ବେବିଲୋନୀୟ ସଭ୍ୟତା ଓ ସଂସ୍କୃତି ଧ୍ୱଂସ ପାଇଗଲା; କିନ୍ତୁ ଚିରପ୍ରବହମାନା ଭାରତୀୟ ସଂସ୍କୃତି ବ୍ୟକ୍ତି ଓ ବ୍ୟଷ୍ଟି ସମନ୍ୱୟ କରି ନବ ନବ ଉନ୍ମେଷଶାଳିନୀ ପ୍ରଜ୍ଞାର ସ୍ରୋତସ୍ୱିନୀରେ ପରିଣତ ହୋଇଯାଇଛି । ଏଠାରେ ବ୍ୟକ୍ତିର ସ୍ୱୀକୃତି ନାହିଁ; ଏହା ଏକ ନୈର୍ବ୍ୟକ୍ତିକ ସଭ୍ୟତା । ଦସ୍ୟୁ ରତ୍ନାକରର ହୃଦୟ ପରିବର୍ତ୍ତନରେ ବାଲ୍ମୀକିଙ୍କୁ ଏହି ଦେଶ ମହାକବିର ସମ୍ମାନ ଦେଇଛି ।

ଜଳଜୀବ ଅର୍ଥନୀତି, ଗୋ-ଅର୍ଥନୀତି ଏବଂ କୃଷି ଅର୍ଥନୀତିକୁ ନେଇ ସଂଗଠିତ ଭାରତୀୟ ସମାଜର ବର୍ଣ୍ଣାଶ୍ରମ ବ୍ୟବସ୍ଥାରେ ରଣଧାରି ବାହି, ଜୟଗାନ ଗାଇ ଶକ ହୁନ ଦଳ, ମୋଗଲ ପଠାଣ ଆସି ଏ ଦେଶକୁ ନିଜର ମାତୃଭୂମି ରୂପେ ଗ୍ରହଣ କରି ଆସିଛନ୍ତି । ଭାରତ ଏକ ସଂସ୍କୃତିବନ୍ତ ଦେଶ । ଶାସନ ଦୃଷ୍ଟିରୁ କେବେ ଏକ ଶାସନାଧୀନ ନ ଥାଇ, ସାମନ୍ତବାଦୀ ଉଦାରତାରେ ଭାରତ ବହୁ ଶାସନ କେନ୍ଦ୍ର ଦ୍ୱାରା ଆଞ୍ଚଳିକ ଭାବରେ ଶାସିତ ହେଉଥିଲେ ମଧ୍ୟ ଆକୁମାରୀ ହିମାଚଳରେ ଏକ ସାମାଜିକ ବ୍ୟବସ୍ଥା ଏବଂ ଏକ ଧରଣର ଜୀବନ ପ୍ରଣାଳୀ ଆନୁସୃତ ହୋଇ ଆସିଛି । ଶାସକ ସର୍ବଦା ସତ୍‌ସଙ୍ଗରେ ରହିବା ପାଇଁ ଧର୍ମାନୁଶାସନ ଦ୍ୱାରା ବାଧ୍ୟ ହୋଇ-ଆସିଛି । ସର୍ବଦା ବୁଦ୍ଧିଜୀବୀ ସାମାଜିକ ନେତାଗଣ ଏ ଦେଶର ସ୍ୱାତନ୍ତ୍ର୍ୟ ଏବଂ ସ୍ୱାଭିମାନକୁ ଯୁଗେ ଯୁଗେ ରକ୍ଷା କରିଆସିଛନ୍ତି ।

ସ୍ୱର୍ଣ୍ଣପ୍ରସୂ ଭାରତର ଏ ନିରବଚ୍ଛିନ୍ନ ସଂସ୍କୃତି କ୍ରମେ ବାଧାପ୍ରାପ୍ତ ହୋଇଛି । ମୁସଲମାନ ଶାସନରେ ସ୍ୱତନ୍ତ୍ର ଜୀବନବୋଧ ପ୍ରତିଷ୍ଠା କରି ଏ ଦେଶର ନବଶାସକକୁଳ ଦେଶର ଇଲାକା ବାହାରେ ତାଙ୍କର ଧର୍ମାନୁଚିନ୍ତା ନିର୍ବନ୍ଧିତ କରି ସନାତନ ସମାଜଧାରାକୁ କିଞ୍ଚିତ୍ ବ୍ୟାହତ କରିଗଲେ । ଗୋଲମରିଚର ସାମାନ୍ୟ ଦର ବୃଦ୍ଧିରେ ବିଚଳିତ ହୋଇ ବ୍ରିଟିଶ ବଣିକ ମୋଗଲ ସମ୍ରାଟଙ୍କ କୋତାକୁ ଜାଭରେ ଗୁଟି ସଫାକରି, ଏ ଦେଶରେ ବ୍ୟବସାୟ ପ୍ରତିଷ୍ଠାନ ସ୍ଥାପନର ସୁଯୋଗ ପାଇଲେ । ଏହିପରି ସୁଯୋଗ ଏବଂ ସ୍ଥାନୀୟ ଶାସନକୁଳ ଓ ଜନସାଧାରଣଙ୍କର ଗୋଷ୍ଠୀଗତ ପ୍ରତି ଦୁର୍ବଳତାକୁ କେନ୍ଦ୍ରକରି ବିଦେଶୀ ଚକ୍ରାନ୍ତ ଜାଲରେ ଏ ଦେଶର ସରଳ ଜନତା ପରାଧୀନ ହୋଇଗଲେ ।

ଆଧୁନିକ ଶିଳ୍ପବିପ୍ଳବ ଫଳରେ ଭାରତ ବିଜୟର ଅଳ୍ପ କାଳ ପରେ ନୂତନ ସାଧକର ଅଧିକାରୀ ହୋଇ ବ୍ରିଟିଶ ଶାସକମାନେ ଏ ଦେଶର ପ୍ରାଚୀନ ସାମାଜିକ ବ୍ୟବସ୍ଥା ସବୁ ଭାଙ୍ଗି ଚୂରମାର କରିଦେଲେ । ବଳିଷ୍ଠ ବ୍ୟକ୍ତିତ୍ୱକୁ ସଙ୍ଗଠନ ଭିତରେ ଖର୍ବ କରାଯାଇ ଏ ଦେଶରେ ସଙ୍ଗଠିତ ଭାବରେ ହୀନମନ୍ୟତା ପ୍ରସାରିତ ହୋଇଗଲା । ଗ୍ରାମ୍ୟ ଅର୍ଥନୀତି ବଦଳରେ ସଙ୍ଗଠିତ କେନ୍ଦ୍ରୀୟ ଅର୍ଥନୀତି ଅନୁସରଣ କରାଯାଇ ଏ ଦେଶର ସ୍ୱୟଂଶୃଙ୍ଖଳିତ ଆର୍ଥନୀତିକ ବ୍ୟବସ୍ଥାକୁ ଲୋପ କରାଯାଇଛି; ସମାଜକୁ ରାଷ୍ଟ୍ର କବଳିତ କରି ଜଣଙ୍କ ପରିବର୍ତ୍ତେ ପଣଙ୍କର ଏକଛତ୍ରବାଦ ପ୍ରତିଷ୍ଠା କରାଯାଇଛି ।

ବୃତ୍ତି ଅନୁସାରେ ପ୍ରାଚୀନ ଶ୍ରେଣୀ ଅବସ୍ଥାକୁ ଲୋପକରି ଆଧୁନିକ ଶିକ୍ଷା ନାମରେ ପାଶ୍ଚାତ୍ୟ ସାମାଜିକ ଆଦର୍ଶର ପାରିପ୍ରେକ୍ଷଣରେ ନୂତନ ଶିକ୍ଷିତ ଶ୍ରେଣୀ ସୃଷ୍ଟି କରାଯାଇଛି । ଇଂରାଜୀ ଭାଷାରେ ଶିକ୍ଷିତ ଏହି ଶ୍ରେଣୀ କର୍ମ-ବିମୁଖ ହେବା ସଙ୍ଗେ ସଙ୍ଗେ ଏ ଦେଶର ଐତିହ୍ୟପୂର୍ଣ୍ଣ ସଂସ୍କୃତ ଭାଷାରେ ଅନଭିଜ୍ଞ ହୋଇଯାଇଛନ୍ତି । ଏହି ନବଗଠିତ ଶିକ୍ଷିତ ଶ୍ରେଣୀ ମାତୃଭୂମିର ପ୍ରାଚୀନ୍ ଐତିହ୍ୟର ବିକୃତ ଏବଂ ଉଦ୍ଦେଶ୍ୟମୂଳକ ଅନୁବାଦ ଇଂରାଜୀ ଭାଷାରୁ ପଢ଼ି ନିଜ ମାତୃଭୂମିକୁ ଘୃଣା କରି ଶିଖିଛନ୍ତି । ସରକାରୀ କଲରେ ନିଯୁକ୍ତ ହୋଇ ଏକ ମଲଙ୍ଗ ମଧ୍ୟବିତ୍ତ ଶ୍ରେଣୀ ରୂପେ ଏହି ଆଧୁନିକ ଶିକ୍ଷିତ ଗୋଷ୍ଠୀ

ବିଳାତ ମାଲିକଙ୍କର ଅନ୍ଧାନୁସରଣ କରିବା ସଙ୍ଗେ ସଙ୍ଗେ ଏ ଦେଶର ସ୍ୱାଭିମାନକୁ ଖର୍ବ କରିଛନ୍ତି ।

ଏହି ବିକଟ ପରିସ୍ଥିତି ଭିତରେ ୧୮୩୩ରେ ଲର୍ଡ଼ ମ୍ୟାକ୍‌ଲେ ଅନୁଗତ ଶିକ୍ଷିତ ଭାରତୀୟ ସୃଷ୍ଟି କରିବା ପାଇଁ ଶିକ୍ଷାନୀତି ପ୍ରଣୟନ କଲେ । ଏଥିପାଇଁ ୧୮୧୭ରେ ଉତ୍କଳଖଣ୍ଡରେ ସଂଗଠିତ ପାଇକ ବିଦ୍ରୋହ ଦାୟୀ ବୋଲି କୁହାଯାଇପାରେ । ୧୮୩୩ ପରବର୍ତ୍ତୀ କାଳରେ ବହୁ ଅସନ୍ତୋଷ ସଂଗଠିତ ହୋଇ ୧୮୫୭ରେ ସ୍ୱାଧୀନତା ସଂଗ୍ରାମ ଆକାରରେ ପ୍ରକାଶିତ ହେଲା । ଭାରତ ଶାସନ ଇଷ୍ଟ ଇଣ୍ଡିଆ କମ୍ପାନୀ ହାତରୁ ଇଂଲଣ୍ଡର ମହାରାଣୀଙ୍କ ଦାୟିତ୍ୱକୁ ଗଲା ।

ତଥାପି ବହୁ ଜନ ସଙ୍ଗଠନ ବିଦେଶୀ ଶାସନ ବିରୁଦ୍ଧରେ କାର୍ଯ୍ୟ କଲା ବେଳକୁ ୧୮୮୫ ବେଳକୁ ସେସବୁକୁ ଏକାଠି କରି ଜଣେ ଅବସର-ପ୍ରାପ୍ତ ଆଇ. ସି. ଏସ୍. ହ୍ୟୁମ ସାହେବଙ୍କ ନେତୃତ୍ୱରେ ଭାରତୀୟ କଂଗ୍ରେସ ପ୍ରତିଷ୍ଠିତ ହେଲା । ପ୍ରାର୍ଥନା ଏବଂ ଦରଖାସ୍ତ ଜରିଆରେ ସୁବିଧା ହାସଲର ସଙ୍ଗଠନ ରୂପେ ଯୁଦ୍ଧାସ୍ତ୍ର ଜାତୀୟବାଦକୁ କଳ୍ପିତ୍ ମ୍ଳାନ କଲେ ମଧ୍ୟ ଏହା ହିଁ ସର୍ବପ୍ରଥମ ଜାତୀୟ ରାଜନୈତିକ ପୀଠ । ଭାରତର ଆଧୁନିକ ଶିକ୍ଷିତ ଗୋଷ୍ଠୀଙ୍କ ମଧ୍ୟରୁ କତିପୟ ବିପ୍ଳବୀ ଜାତୀୟ କଂଗ୍ରେସର ଆଭିମୁଖ୍ୟକୁ ବିଂଶ ଶତାବ୍ଦୀର ପ୍ରଥମ ଦଶକରେ ବଦଳାଇ ଦେଇଥିଲେ ।

ଦ୍ୱିତୀୟ ଦଶକର ଶେଷକାଳକୁ ଦକ୍ଷିଣ ଆଫ୍ରିକାରେ ସଫଳତାର ସହିତ ପ୍ରବାସୀ ଭାରତୀୟଙ୍କ ଆନ୍ଦୋଳନକୁ ଅହିଂସ ମାର୍ଗରେ ପ୍ରତିହତ କରି ଯଶସ୍ୱୀ ହୋଇଥିବା ଜନନେତା ଗାନ୍ଧିଜୀ କଂଗ୍ରେସରେ ଯୋଗଦେଲେ । ଏହି ବିଳାତ ଫେରନ୍ତା ବାରିଷ୍ଟରଙ୍କ ଅର୍ଦ୍ଧ ନଗ୍ନ ଫକୀର ବେଶରେ 'ଜୀବନ ଦାନ' ଭାରତରେ ଅପୂର୍ବ ଜନ-ଜାଗରଣ ସୃଷ୍ଟି କଲା । ଜାତୀୟ କଂଗ୍ରେସ ମୁଷ୍ଟିମେୟ ଶିକ୍ଷିତ ନେତାଙ୍କ ବୈଠକଖାନା ଛାଡ଼ି ଏ ଦେଶର ଅଗଣିତ ଜନଗଣଙ୍କୁ ସ୍ପର୍ଶ କଲା । ପାଶ୍ଚାତ୍ୟ ଶିକ୍ଷାରେ ସୁପଣ୍ଡିତ ଭାରତୀୟ ଜନନାୟକ-ମାନେ ପାଶ୍ଚାତ୍ୟ ଢଙ୍ଗରେ ରାଜନୈତିକ ଆନ୍ଦୋଳନ ଚଳାଇ ଆଦର୍ଶ ଓ ଆଚରଣରେ ଅପୂର୍ବ ଉଦାହରଣ ରଖିଗଲେ ।

ଏହା ଫଳରେ ଭାରତରେ ଅପୂର୍ବ ଜନଜାଗରଣ, ୨ୟ ବିଶ୍ୱଯୁଦ୍ଧର ସାଂଘାତିକ ପ୍ରତିକ୍ରିୟା ଆଦି ଇତିହାସର ଭ୍ରୂକୁଟିରେ ଅର୍ଦ୍ଧ ପୃଥିବୀର ଅଧୀଶ୍ୱର ବ୍ରିଟିଶ ରାଜଶକ୍ତି ୧୯୪୭ ଅଗଷ୍ଟ ପନ୍ଦରରେ ଭାରତୀୟ ଜନନେତା-ମାନଙ୍କୁ ଶାନ୍ତିପୂର୍ଣ୍ଣ ଭାବରେ କ୍ଷମତା ହସ୍ତାନ୍ତର କରି ବିଦାୟ ନେଇଗଲା । ଇତିହାସର ଏ ମୋଡ଼ ଘୂରେଇବା ପାଇଁ ବହୁ ଭାରତୀୟ ନିର୍ଯ୍ୟାତନାକୁ ବରଣ କରି ନେଇଛନ୍ତି, ଜୀବନବଳୀ ଦେଇଛନ୍ତି, ସର୍ବସ୍ୱ ପର୍ଯ୍ୟନ୍ତ ତ୍ୟାଗ କରିଛନ୍ତି । ଜାତୀୟ କଂଗ୍ରେସ ୧୮୮୫ ରେ ପ୍ରତିଷ୍ଠିତ ହେବାର ବର୍ଷେକ ପୂର୍ବରୁ ବୌଦ୍ଧଧର୍ମର ଜନ୍ମଭୂମି ବିହାରରେ ଜନ୍ମହୋଇ ମଧ୍ୟବିତ୍ତ ପରିବାରରେ ଶୈଶବ ଅତିକ୍ରମ କରି, ଆଧୁନିକ ବିଶ୍ୱବିଦ୍ୟାଳୟ ଶିକ୍ଷାରେ ସର୍ବୋଚ୍ଚ ଉପାଧିଧାରୀ ରାଜେନ୍ଦ୍ର ପ୍ରସାଦ ସରକାରୀ ଚାକିରୀ ଗ୍ରହଣ ନ କରି ସ୍ୱାଧୀନ ଆଇନଜୀବୀର ବୃତ୍ତି ଛାଡ଼ି ରାଜନୈତିକ-ସନ୍ନ୍ୟାସୀ ଗାନ୍ଧିଜୀଙ୍କର ଅନୁଗାମୀ ରୂପେ ଜୀବନ ଉତ୍ସର୍ଗ କରିଥିଲେ । ମୁକ୍ତି ଆନ୍ଦୋଳନର ପତନ-ଅଭ୍ୟୁଦୟ ବନ୍ଧୁର ପନ୍ଥାରେ ଲକ୍ଷ୍ୟଚ୍ୟୁତ ନ ହୋଇ ସେ ଶେଷ ସଂଗ୍ରାମ ଯାଏ ଅପ୍ରତିହତ ହୋଇ ରହିଲେ । ସ୍ୱାଧୀନ ଭାରତ ସମ୍ବିଧାନ ଭାରତର ଅଧ୍ୟକ୍ଷ ଏବଂ ସମ୍ବିଧାନସମ୍ମତ ଭାରତୀୟ ସାଧାରଣତନ୍ତ୍ରରେ ଦୀର୍ଘ ବାର ବର୍ଷକାଳ ଜାତିର ପ୍ରଥମ ରାଷ୍ଟ୍ରପତି ରୂପେ ସେ ଗଣତାନ୍ତ୍ରିକ ସହନଶୀଳତାର ସହିତ ସର୍ବୋଚ୍ଚ ଆସନର ପରମ୍ପରା ସ୍ଥାପନ କରିଗଲେ ।

ସେହି ଭାରତରତ୍ନ ରାଜେନ୍ଦ୍ର ପ୍ରସାଦଙ୍କ ଜୀବନକୁ ଅନୁଧ୍ୟାନ କରିବାର କଥା । ତାଙ୍କ ଜୀବନୀ ଭାରତୀୟ ମୁକ୍ତି ଆନ୍ଦୋଳନ ଏବଂ ତତ୍‌ପରବର୍ତ୍ତୀ ସ୍ୱାଧୀନ ଭାରତର ଦୀର୍ଘ ଆଠ ଦଶନ୍ଧିର ଇତିହାସ ବୋଲି କହିଲେ ଅତ୍ୟୁକ୍ତି ହେବ ନାହିଁ ।

୧୮୮୪ ଖ୍ରୀଷ୍ଟାବ୍ଦ ଡିସେମ୍ବର ମାସ ୩ ତାରିଖ ଦିନ ବିହାର ପ୍ରଦେଶର ଶାରନ୍ ଜିଲାରେ ଜିରାଦେଇ ଗ୍ରାମରେ ରାଜେନ୍ଦ୍ର ପ୍ରସାଦଙ୍କ ଜନ୍ମ । ପିତା ମୁନ୍‌ସି ମହାଦେବ ସହାୟଙ୍କ ତିନିପୁଅ ଭିତରୁ ସେ କନିଷ୍ଠ । ମହାଦେବଙ୍କର ପାର୍ଶୀ ତଥା ସଂସ୍କୃତ ପାଣ୍ଡିତ୍ୟ ଥିଲା ଏବଂ କୁସ୍ତି-କସରତ ତଥା ଘୋଡ଼ାଚଢ଼ା ସେ ଜୀବିକା ନିର୍ବାହ କରୁଥିଲେ । ଏହାଛଡ଼ା ସେ ଗରିବ

ଯୋଗୀମାନଙ୍କ ମାଗଣାରେ ଆୟୁର୍ବେଦୀୟ ଚିକିତ୍ସା କରୁଥିଲେ । ମହାଦେବଙ୍କ ପତ୍ନୀ ଧର୍ମପରାୟଣା ଏବଂ ନିତ୍ୟ ପୁରାଣ ପାଠ କରନ୍ତି । ତେଣୁ ଧର୍ମଭାବ ଏବଂ ଦେଶପ୍ରେମର ବାତାବରଣରେ ରାଜେନ୍ଦ୍ର ପ୍ରସାଦଙ୍କ ବାଲ୍ୟଜୀବନ ଗଢିଥିଲା ।

ରାଜେନ୍ଦ୍ର ପ୍ରସାଦଙ୍କ ପୂର୍ବପୁରୁଷମାନେ ଉତ୍ତର ପ୍ରଦେଶର ପୂର୍ବଭାଗରୁ ଆସି ବିହାରରେ ବସବାସ କରିଥିଲେ । ଶିକ୍ଷକତା ଏବଂ ଷ୍ଟେଟର ମ୍ୟାନେଜରୀ ସେହି ବଂଶର ଜୀବିକା ଥିଲା । ଏକ ସମ୍ଭ୍ରାନ୍ତ କାୟସ୍ଥ ପରିବାରର ମୂଲ୍ୟ-ବୋଧରେ ପରିବାର ଚାଲୁଥିଲା । ସେହି ପରିବାରର ଚଉଧରଲାଲ ବିହାରର ଗଡ଼ଜାତର ଦିବାନ୍ ଥିଲେ । ଏହି ସୂତ୍ରରେ ସେ ଗୋଟିଏ ଛୋଟିଆ ଜମିଦାରୀ ନେଇଥିଲେ । ଜମିଦାରୀରୁ ବର୍ଷକୁ ପାଞ୍ଚ ଛ' ହଜାର ଯାଏ ଟଙ୍କା ମିଳୁଥିଲା ।

ମାତ୍ର ୨୭ ବର୍ଷ ବୟସରେ ୧୯୧୦ ମସିହାରେ ରାଜେନ୍ଦ୍ର ପ୍ରସାଦ ମାତୃହୀନ ହୋଇଗଲେ । ତେଣୁ ବିଧବା ଭଉଣୀ ଭଗବତୀ ସେହି ଯୌଥ ପରିବାରର ଦାୟିତ୍ୱ ନେଲେ । ଏହି ଭଉଣୀ ପରିବାରର ସମସ୍ତଙ୍କ ସ୍ନେହ ଓ ଭକ୍ତିଭାଜନ ଥିଲେ । ବଡ଼ ଭାଇ ମହେନ୍ଦ୍ର ପ୍ରସାଦଙ୍କ ମାରଫତରେ ରାଜେନ୍ଦ୍ର ଶିକ୍ଷାଲାଭ କଲେ । ରାଜେନ୍ଦ୍ର ଅସାଧାରଣ ଭାବରେ ବୁଦ୍ଧିମାନ୍ ଏବଂ ବିଦ୍ୟାର୍ଜନରେ ଅତି ଆଗ୍ରହୀ ଥିବାରୁ ବଡ଼ ଭାଇ ତାଙ୍କୁ ପାରିବାରିକ ଜଞ୍ଜାଳରୁ ଦୂରରେ ରଖି ଉନ୍ନତ ଶିକ୍ଷିତ ଜୀବନ ଗଠନ ପାଇଁ ଅପୂର୍ବ ସୁଯୋଗ ଯୋଗାଇ ଦେଉଥିଲେ । ଜମିଦାରୀର ପରିଚାଳନାଗତ ତ୍ରୁଟି ପାଇଁ ପରିବାରର ଅର୍ଥାଭାବ ଘଟୁଥିଲା । ତଥାପି ଧର୍ମଭାବର ବଳରେ ସେମାନେ ଅର୍ଥାଭାବକୁ ଅତିକ୍ରମ କରି ଯାଉଥିଲେ ।

ଜିରାଦାଇ ଗ୍ରାମ କ୍ଷୁଦ୍ର ହେଲେ ମଧ୍ୟ ସ୍ୱାବଲମ୍ବୀ । ପରିବାର ଚଳଣିର ପ୍ରାୟ ସମସ୍ତ ଆବଶ୍ୟକତା ଗ୍ରାମ ଭିତରେ ଉତ୍ପାଦିତ ହୋଇପାରୁଥିଲା । ହିନ୍ଦୁ ଓ ମୁସଲମାନ ସମ୍ପ୍ରଦାୟ ଭିତରେ ଏକତା ଏବଂ କୃଷକ ଓ ଶିଳ୍ପୀ ପରିବାରର ନେତୃତ୍ୱରେ ଗ୍ରାମ୍ୟଜୀବନରେ ସହଜ ପ୍ରତିଷ୍ଠା ହୋଇପାରିଥିଲା । ମନୋମାଳିନ୍ୟର ସମାଧାନ ପାଇଁ ଗ୍ରାମପଞ୍ଚାୟତର ସିଦ୍ଧାନ୍ତ ଚୂଡ଼ାନ୍ତ ବୋଲି ଧରାଯାଉଥିଲା । ସକାଳୁ ସନ୍ଧ୍ୟାଯାଏ ଜୀବିକା-ଧର୍ମରେ କଠିନ ପରିଶ୍ରମ

ଏବଂ ବିଳାସବ୍ୟସନରୁ ଦୂରରେ ରହି ଏହି ଗ୍ରାମବାସୀମାନେ ପ୍ରାଚୀନ ଭାରତର ଅନ୍ୟାନ୍ୟ ଗ୍ରାମପରି ସରଳ ସୁନ୍ଦର ଜୀବନଯାପନ କରୁଥିଲେ । ମଦ୍ୟପାନରୁ କୁଷ୍ଠରୋଗ ହୁଏ ବୋଲି ଧାରଣା ଓ ଏହି ବିଶ୍ୱାସରୁ ମଦ୍ୟପାନ ପ୍ରତି ଏକ ସ୍ୱାଭାବିକ ଘୃଣାଭାବ ସୃଷ୍ଟି ହୋଇଯାଇଥିଲା ।

ଗ୍ରାମରେ କୌଣସି ବିଦ୍ୟାଳୟ ନ ଥିଲା । ତେଣୁ ରାଜେନ୍ଦ୍ରଙ୍କୁ ପ୍ରାଥମିକ ଶିକ୍ଷା ପାଇଁ ଉର୍ଦ୍ଦୁ ଓ ପାର୍ଶୀ ଭାଷା ଶିକ୍ଷା ଦେବାକୁ ଜଣେ ପଣ୍ଡିତଙ୍କୁ ନିଯୁକ୍ତ କରାଯାଇଥିଲା । ଆଉ ଜଣେ ଶିକ୍ଷକ ତାଙ୍କୁ ଗଣିତ ଓ ହିନ୍ଦୀ ଭାଷା ଶିକ୍ଷା ଦେଉଥିଲେ । ସେତେବେଳେ ସାରା ଶାରନ୍ ଜିଲାରେ ମାତ୍ର ତିନୋଟି ହାଇସ୍କୁଲ ଥିଲା । ପ୍ରାଥମିକ ଶିକ୍ଷା ପରେ ରାଜେନ୍ଦ୍ର ଗ୍ରାମଠାରୁ ୩୫ କି. ମି. ଦୂରରେ ଥିବା ଛାପ୍ରା ହାଇସ୍କୁଲରେ ଅଧ୍ୟୟନ କଲେ । ଅଧ୍ୟବସାୟ ଓ ଅସାଧାରଣ ବୁଦ୍ଧିମତ୍ତା ପାଇଁ ସେ ପ୍ରଥମ ବର୍ଷ ଡବଲ ପ୍ରମୋସନ ପାଇଲେ । ପ୍ରତି ଶ୍ରେଣୀରେ ସେ ପରୀକ୍ଷାରେ ପ୍ରଥମ ସ୍ଥାନ ଅଧିକାର କରୁଥିଲେ । ୧୯୦୨ ମସିହାରେ ସେ କଲିକତା ବିଶ୍ୱବିଦ୍ୟାଳୟରୁ ପ୍ରଥମ ଶ୍ରେଣୀରେ ପ୍ରଥମ ସ୍ଥାନ ଅଧିକାର କରି ମାଟ୍ରିକ୍ ପାସ୍ କଲେ । (ସେତେବେଳେ ଆସାମ, ବାଙ୍ଗଲାଦେଶ, ପଶ୍ଚିମବଙ୍ଗ, ବିହାର, ଓଡ଼ିଶା ଏବଂ ବ୍ରହ୍ମଦେଶ ପାଇଁ କଲିକତା ବିଶ୍ୱବିଦ୍ୟାଳୟ ହିଁ ଏକମାତ୍ର ବିଶ୍ୱବିଦ୍ୟାଳୟ ଥିଲା ) । ମାଟ୍ରିକ୍ ପାସ୍ ପୂର୍ବରୁ ସେ ମାତ୍ର ୧୩ ବର୍ଷ ବୟସରେ ରାଜବଂଶୀ ଦେବୀଙ୍କୁ ବିବାହ କରିଥିଲେ । ରକ୍ଷଣଶୀଳତା ହିଁ ତତ୍କାଳୀନ ପାରିବାରିକ ଧର୍ମ ଥିଲା । କିନ୍ତୁ ବିବାହ ମେଧାବୀ ରାଜେନ୍ଦ୍ରଙ୍କ ଶିକ୍ଷାଗ୍ରହଣରେ ବାଧା ସୃଷ୍ଟି କରି ନ ଥିଲା । ବିଦ୍ୟାର୍ଥୀ ଜୀବନ ଶେଷ ହେଲାଯାଏ ସେ ସାଂସାରିକ ବ୍ୟାପାରରେ ପଶି ନ ଥିଲେ ।

ତତ୍କାଳୀନ ଭାରତର ସାମାଜିକ ଏବଂ ଅର୍ଥନୈତିକ ଚିତ୍ର ଅତି ଦ୍ରୁତ ଗତିରେ ବଦଳି ଯାଉଥାଏ । ଭାରତର ପ୍ରାଚୀନ ସାମାଜିକ ସଙ୍ଗଠନ ସବୁ ଭାଙ୍ଗି ଯାଇଥାଏ । ନୂତନ ପଶ୍ଚିମା ସାମାଜିକ ସଙ୍ଗଠନ ମୁଣ୍ଡ ଟେକି ଉଠୁଥାଏ । ଏ ଦେଶରେ ଇଂରାଜୀ ଭାଷାରେ ଶିକ୍ଷିତ ନୂତନ ମଧ୍ୟବିତ୍ତ ଶ୍ରେଣୀ ଗଢ଼ି ଉଠୁଥାଏ । ବିଦେଶୀ ଇଂରେଜ ସରକାର ଶିଳ୍ପବିକାଶ ଓ ପରିବହନ ଦିଗରେ ବିଶେଷ ଗୁରୁତ୍ୱ ଦେଉଥାନ୍ତି ।

କଲିକତା, ବମ୍ବେ, ଅହମଦାବାଦରେ ଷ୍ଟୋଟ, ଲୁଗା ଏବଂ ସୂତାକଲମାନ ଗଢ଼ି ଉଠୁଥାଏ । ସ୍ୱାବଲମ୍ବୀ କୁଟୀର ଶିଳ୍ପର ଉଚ୍ଛେଦ କରାଯାଇ ଶିଳ୍ପ-ବିପ୍ଳବ ଜରିଆରେ ବୃହତ୍ ଶିଳ୍ପମାନ ପ୍ରତିଷ୍ଠା କରାଯାଉଥିଲା । ଭାରତୀୟ ବୟନ ଶିଳ୍ପର ଉତ୍ପାଦନ ଓ ରପ୍ତାନୀକୁ ସରକାରୀ ଭାବରେ ବିରୋଧ କରାଯାଇ ବିଲୋପ କରିଦେବାର ଚକ୍ରାନ୍ତ ଚାଲିଥାଏ । ବହୁ ବୟନଶିଳ୍ପୀ ଜୀବିକା ହରାଇ ବେକାର ହୋଇଥିଲେ । ବଙ୍ଗ, ବିହାର ଆଦି ପ୍ରଦେଶ ଗୁଡ଼ିକରେ ଜମିଦାରୀ ପ୍ରଥା ପ୍ରବର୍ତ୍ତିତ କରାଯାଇ ଗ୍ରାମ୍ୟ ଅର୍ଥନୀତିକୁ ବିପର୍ଯ୍ୟସ୍ତ କରାଯାଇଥାଏ । ଜମିଦାରଙ୍କ ଅତ୍ୟାଚାରରେ ଚାଷୀଶ୍ରେଣୀ ଉତ୍ପୀଡ଼ିତ ହେଉଥିଲେ । ଗ୍ରାମ ପଞ୍ଚାୟତ ସଂସ୍ଥାକୁ ଦୁର୍ବଳ କରିଦେଇ ସଙ୍ଘବଦ୍ଧ ଗ୍ରାମ୍ୟ ଜୀବନକୁ ନିରୁତ୍ସାହିତ କରାଯାଉଥାଏ । ଖାଦ୍ୟ ପଦାର୍ଥ ପରିବର୍ତ୍ତେ ଅର୍ଥକରୀ ଫସଲ ଉତ୍ପାଦନ ପାଇଁ ବ୍ୟବସ୍ଥା ହେଉଥାଏ ।

ଏହାଛଡ଼ା କଲିକତା, ବମ୍ବେ ଓ ମାନ୍ଦ୍ରାଜକୁ କେନ୍ଦ୍ରକରି ଆଧୁନିକ ଶିକ୍ଷାର ପ୍ରସାର କରାଯାଉଥାଏ । ମୁଦ୍ରାଯନ୍ତ୍ର ପ୍ରସାର କରି ବହୁ ପତ୍ରପତ୍ରିକା ପ୍ରକାଶ ହେଉଥାଏ । ପରେ ଦିଲ୍ଲୀ ଭାରତର ରାଜଧାନୀ ରୂପେ ଅନ୍ୟତମ କେନ୍ଦ୍ରରେ ପରିଣତ ହେଲା । ମ୍ୟାକ୍‌ଲେ ସାହେବଙ୍କ ଶିକ୍ଷାନୀତି ଦ୍ୱାରା ନୂତନ ପାଶ୍ଚାତ୍ୟ ମୂଲ୍ୟବୋଧରେ ଗଢ଼ିଉଠୁଥିବା ଶିକ୍ଷିତ ଶ୍ରେଣୀ ଏ ଦେଶର ପ୍ରଶାସନିକ କ୍ଷେତ୍ରରେ ବହୁ ଅଧସ୍ତନ ଦାୟିତ୍ୱ ନେଲେ । ତେଣୁ ସମାଜରେ ଗୁମୂଳ ପରିବର୍ତ୍ତନର ସୂତ୍ରପାତ ହେଲା । ପୁରାତନ ବ୍ୟବସ୍ଥା ଭାଙ୍ଗିଯାଉଥାଏ । ନୂତନ ବ୍ୟବସ୍ଥା ଯଥାଯଥ ଭାବରେ ଆସି ନ ଥାଏ । ଏହି ସନ୍ଧିକ୍ଷଣରେ ସାମାଜିକ ଅସ୍ଥିରତା ବ୍ୟାପିଯାଇଥାଏ । ନୂତନ ଶିକ୍ଷିତ ଶ୍ରେଣୀ ପାଶ୍ଚାତ୍ୟ ଅନୁକରଣରେ ମାତିଯାଇ ନିଜ ମାତୃଭୂମି ଏବଂ ପରମ୍ପରାକୁ ଶତମୁଖରେ ନିନ୍ଦା କରୁଥାନ୍ତି । ସେହି କ୍ଷଣରେ ରାଜା ରାମମୋହନ ରାୟ, ସ୍ୱାମୀ ବିବେକାନନ୍ଦ, ଉମେଶଚନ୍ଦ୍ର ବାନାର୍ଜି, ଦାଦାଭାଇ ନାରୋଜୀ ପ୍ରମୁଖ ଜାତୀୟତାବାଦୀ ଜନନାୟକମାନେ ଶିକ୍ଷା, ସଂସ୍କୃତି ଓ ସମାଜର ପୁନର୍ଗଠନ ପାଇଁ ପ୍ରାଣପାତ ଉଦ୍ୟମ କରୁଥାଆନ୍ତି ।

ବାଳଗଙ୍ଗାଧର ତିଳକ, ବିନାୟକ ସାଭରକର ପ୍ରଭୃତି ଜନନାୟକ-ମାନେ 'ସ୍ୱରାଜ' ପ୍ରତି ଭାରତୀୟର ଜନ୍ମଗତ ଦାବୀ ବୋଲି ଆହ୍ୱାନ ଜଣାଇଥିଲେ । ଜନଗଣଙ୍କ ମନରୁ ଅସହାୟ ଜଡ଼ତା ଭାବ ପରିବର୍ତ୍ତେ ନବଜୀବନର ସୂତ୍ରପାତ ହେଉଥାଏ । ୧୮୮୫ ମସିହାରେ ବିଭିନ୍ନ ଭାରତୀୟ ଆଞ୍ଚଳିକ ଜନସେବୀ ଅନୁଷ୍ଠାନମାନଙ୍କର ମିଳନରେ ଜାତୀୟ କଂଗ୍ରେସ ପ୍ରତିଷ୍ଠିତ ହେଲା । ଭାରତର ସର୍ବତ୍ର ନବଜାଗରଣର ପଦଧ୍ୱନି ଶୁଭିଲା । ବିହାର ପ୍ରଦେଶ ପ୍ରାଚୀନ ଶିକ୍ଷା ଓ ସଂସ୍କୃତିର ଅନ୍ୟତମ ପୀଠ । ଲୁମ୍ବିନୀ ପ୍ରଗଣାରେ ଜନ୍ମ ହୋଇ ଗୌତମବୁଦ୍ଧ ବିହାରର ବୋଧିଗୟାରେ ଦିବ୍ୟଜ୍ଞାନ ଲାଭ କରିଥିଲେ । ବୁଦ୍ଧଦେବ ପାଟଳିପୁତ୍ର (ଆଧୁନିକ ପାଟଣା) ଏବଂ ରାଜଗୃହକୁ ତାଙ୍କ ଧର୍ମ ପ୍ରଚାରର କର୍ମକେନ୍ଦ୍ର କରିଥିଲେ । ଜୈନ ଧର୍ମର ପ୍ରତିଷ୍ଠାତା ମହାବୀର ଜିନ ମଧ୍ୟ ଧର୍ମ ପ୍ରଚାରରେ ବିହାରକୁ କର୍ମକ୍ଷେତ୍ର କରିଥିଲେ । ବିହାରର ନାଳନ୍ଦା ପ୍ରାଚ୍ୟ ସଂସ୍କୃତି ଏବଂ ଶିକ୍ଷା-ଦାନର ଏକ ମହାନ୍ ବିଶ୍ୱବିଦ୍ୟାଳୟ ହିସାବରେ ଆନ୍ତର୍ଜାତିକ ଖ୍ୟାତିଲାଭ କରିଥିଲା ।

ଏକାଦଶ ଖ୍ରୀଷ୍ଟାବ୍ଦରେ ବିହାର ମୁସଲମାନ ଶାସନାଧୀନ ହେଲା । ସୂରବଂଶର ଶେରଶାହ ଆଧୁନିକ ପାଟଣା ମହାନଗରୀର ପ୍ରତିଷ୍ଠାତା । ବ୍ରିଟିଶ ଶାସନରେ ଅଷ୍ଟାଦଶ ଶତାବ୍ଦୀର ଆରମ୍ଭ କାଳରୁ ବିହାରର ପ୍ରାକୃତିକ ସମ୍ପଦ, ଅଫିମ, ନୀଳଚାଷ ଏବଂ ବୟନ ଶିଳ୍ପକୁ ଇଂରେଜମାନେ ଅକ୍ତିଆର କରିନେଇ ଶୋଷଣ ଏବଂ ଜନପୀଡ଼ନ ଆରମ୍ଭ କରିଦେଲେ । ପ୍ରାକୃତିକ ସମ୍ପଦରେ ପରିପୂର୍ଣ୍ଣ ବିହାରର ଜନଗଣଙ୍କର ଆର୍ଥିକ ସ୍ଥିତି ଦିନକୁ ଦିନ ଶୋଚନୀୟ ହୋଇପଡ଼ୁଥାଏ । ବଙ୍ଗଳାର ପ୍ରଭାବରେ ବିହାରର ସ୍ୱାତନ୍ତ୍ର୍ୟ କ୍ରମେ ବିଷ୍ମୃତ ହୋଇ ଆସୁଥିଲା ।

ଏହି ସାମାଜିକ ପରିବେଶ ଭିତରେ ରାଜେନ୍ଦ୍ର ପ୍ରସାଦ କଲିକତା ପ୍ରେସିଡେନ୍‌ସି କଲେଜରେ ଉଚ୍ଚଶିକ୍ଷା ଆରମ୍ଭ କରିଥିଲେ । ବିହାରରୁ ଯାଇ କଲିକତା ମହାନଗରୀରେ ରହି କଲେଜରେ ପଢିବା ସେତେବେଳେ ଆଦୌ ସୁବିଧାଜନକ ନ ଥିଲା । କଲିକତା ମହାନଗରୀରେ ବଙ୍ଗୀୟମାନଙ୍କର ଅହଂ-ମନ୍ୟତାର ବାତାବରଣରେ ବହିରାଗତ ଛାତ୍ରର ହୀନମନ୍ୟତା ସ୍ୱତଃ ଜାଗ୍ରତ

ହୋଉଥିଲା । କଲେଜ ଛାତ୍ର ରାଜେନ୍ଦ୍ର ପ୍ରସାଦ ବହାରୀ ଅଚକନ୍, ପାଇଜାମା ଓ ଟୋପି ପିନ୍ଧୁଥିଲେ । ଅନେକେ ତାଙ୍କୁ ବହାରୀ ମୁସଲମାନ ବୋଲି ବିଚାରୁଥିଲେ; କିନ୍ତୁ ରାଜେନ୍ଦ୍ରଙ୍କର ବହାର ଛାତ୍ର-ଜୀବନରେ ପୂଜ୍ୟ ଶିକ୍ଷକ ରସିକଲାଲ ରାୟ ତାଙ୍କୁ ଉପଦେଶ ଦେଇ କହିଥିଲେ ଯେ, କଲିକତାର ଲୋଭନୀୟ ପରିବେଶରେ ପ୍ରଭାବିତ ନ ହୋଇ ଶ୍ରେଣୀରେ ପ୍ରଥମ ସ୍ଥାନ ଲାଭ କରିବାପାଇଁ ତାଙ୍କୁ କଠୋର ପରିଶ୍ରମ କରିବାକୁ ହେବ । ଗୁରୁ ବାକ୍ୟ ସ୍ମରଣ କରି ରାଜେନ୍ଦ୍ର ଛାତ୍ରଜୀବନର ପରିପନ୍ଥୀ ମହାନଗରୀର ଚିତ୍ତବିନୋଦନ ଏବଂ ବିଭ୍ରାନ୍ତିକାରୀ ପ୍ରଭାବରେ ଆଦୌ ବିଚଳିତ ହୋଇ ନ ଥିଲେ । ବିଦ୍ୟାଧ୍ୟୟନକୁ ସେ ସର୍ବାଧିକ ଗୁରୁତ୍ୱ ଦେଉଥିଲେ । କଲିକତାରେ ପ୍ରାଥମିକ ରହଣିକାଳରେ ତାଙ୍କୁ ମେଲେରିଆ ଜ୍ୱର ହୋଇଥିଲା । ସେ ବହୁତ କୁଇନାଇନ୍ ବଟିକା ଖାଇ ଆରୋଗ୍ୟ ହେଲେ । ମାତ୍ର କୁଇନାଇନ୍‌ର ପ୍ରତିକ୍ରିୟା ସ୍ୱରୂପ ସେ ପରବର୍ତ୍ତୀ ଜୀବନରେ ଶ୍ୱାସରୋଗରେ ଆକ୍ରାନ୍ତ ହୋଇଥିଲେ ।

କଲିକତା ବିଶ୍ୱବିଦ୍ୟାଳୟର ପ୍ରେସିଡେନ୍‌ସି କଲେଜରେ ଡକ୍ଟର ଜଗଦୀଶ ଚନ୍ଦ୍ର ଘୋଷ, ଡକ୍ଟର ପି. ସି. ରାୟ, ଅଧ୍ୟାପକ ବି. ଏନ୍. ସେନ, ଅଧ୍ୟାପକ ସି. କେ. ରାୟ ଏବଂ ଅଧ୍ୟାପକ ପର୍ସିଭାଲଙ୍କ ପରି ଶିକ୍ଷାବିତ୍‌ମାନଙ୍କ ପ୍ରଭାବରେ ରାଜେନ୍ଦ୍ର ପ୍ରସାଦଙ୍କର ଜ୍ଞାନ ଲାଭର ପିପାସା ବଳବତୀ ହେଲା । ଛାତ୍ର ରାଜେନ୍ଦ୍ର ସୁଶିକ୍ଷିତ ହୋଇ ଜନଗଣଙ୍କ ସେବା କରିବା ପାଇଁ ଏହି ଅଧ୍ୟାପକକୁଳର ବିଦଗ୍ଧ ପ୍ରଭାବରେ ଅନୁପ୍ରାଣିତ ହୋଇଥିଲେ । ଅଧ୍ୟାପକ-ମାନେ ତାଙ୍କ ପରି ବୁଦ୍ଧିମାନ ଛାତ୍ରକୁ ହୃଦୟ ଦେଇ ଭଲ ପାଉଥିଲେ । ପ୍ରତି ବିଶ୍ୱବିଦ୍ୟାଳୟ ପରୀକ୍ଷାରେ ସେ ପ୍ରଥମ ସ୍ଥାନ ଅଧିକାର କରୁଥିଲେ । ସେଥିପାଇଁ ସେ ବିଭିନ୍ନ ପ୍ରକାର ଛାତ୍ରବୃତ୍ତି ପାଉଥିଲେ । ତେଣୁ ଖର୍ଚ୍ଚ ପାଇଁ ଘର ଉପରେ ସେ ପ୍ରାୟ ନିର୍ଭର କରୁ ନ ଥିଲେ । ଜମିଦାରୀର ବିଭାଟ ସତ୍ତ୍ୱେ ବେଳେ ବେଳେ କରଜ କରି ପିତା କିଛି କିଛି ଟଙ୍କା ପଠାନ୍ତି । ମେଧାବୀ ଛାତ୍ର ରାଜେନ୍ଦ୍ର ପ୍ରସାଦ ପୁସ୍ତକକୀଟ ନ ଥିଲେ । ତାଙ୍କର ସରଳ ଏବଂ ମିଶାଣ ବ୍ୟବହାର ପାଇଁ ସେ ଶିକ୍ଷକ ଏବଂ ଛାତ୍ରମହଲରେ ପ୍ରିୟପାତ୍ର

ହୋଇଥିଲେ । ତାଙ୍କର ସ୍ମରଣଶକ୍ତି ଅସାଧାରଣ ଥିଲା । ପରୀକ୍ଷାରେ ସେ ବାରମ୍ବାର ସେଣ୍ଟେନ୍ସ ହିସାବରେ ନିର୍ବାଚିତ ହେଉଥିଲେ । ଇଂରାଜୀ ଭାଷାରେ ତାଙ୍କର ଅସାଧାରଣ ପାଣ୍ଡିତ୍ୟରେ ସମସ୍ତେ ଚମତ୍କୃତ ହେଉଥିଲେ । ସେ ସଙ୍କୀର୍ଣ୍ଣ ଜାତିଆଣ ପ୍ରଥାର ଘୋର ବିରୋଧୀ ଏବଂ ମାନସିକ ଦୃଢ଼ତାସମ୍ପନ୍ନ ଯୁବକ ଥିଲେ । ବିଲାତ ଫେରନ୍ତା ଡକ୍ଟର ଗଣେଶ ପ୍ରସାଦ ପ୍ରାୟଶ୍ଚିତ୍ତ ନ କରିବାରୁ ଜାତି ଓ ସମାଜରୁ ବାସନ୍ଦ ହୋଇଥିଲେ ମଧ୍ୟ ରାଜେନ୍ଦ୍ର ତାହା ଅମାନ୍ୟ କରି ତାଙ୍କ ସହିତ ବସି ଭୋଜନ କରିଥିଲେ । ବାସନ୍ଦର ଭୟରେ ସେ ବିଚଳିତ ହୋଇ ନ ଥିଲେ । ପରେ ପରେ କାୟସ୍ଥ ଜାତିର ବହୁ ପ୍ରଗତିଧର୍ମୀ ଯୁବକ ତାଙ୍କୁ ସମର୍ଥନ କରିବାରୁ ଜାତିଆଣିଆବାଦୀ ଉଗ୍ରପନ୍ଥୀ ରକ୍ଷଣଶୀଳ ମୁରବୀମାନେ ପରାସ୍ତ ହୋଇଥିଲେ ।

ରାଜେନ୍ଦ୍ର ପ୍ରସାଦ କଲିକତାରେ ଉଚ୍ଚଶିକ୍ଷା ଲାଭ କରୁଥିବା ସମୟ ଭାରତ ଇତିହାସରେ ଏକ ସନ୍ଧିସନ୍ଧ ବେଳ । କଲିକତା ବିଂଶ ଶତାବ୍ଦୀର ପ୍ରଥମ ଦଶକରେ ବଙ୍ଗଭଙ୍ଗଜନିତ ଉନ୍ମାଦନା ଏବଂ ବିପ୍ଳବୀ ଦେଶସେବୀ-ମାନଙ୍କର କର୍ମକେନ୍ଦ୍ର ଥିଲା । ବ୍ରିଟିଶ-ଭାରତର ରାଜଧାନୀ ଏହି କଲିକତା ମହାନଗରୀ ଆଧୁନିକ ଶିକ୍ଷା, ସଂସ୍କୃତି ଏବଂ ଚେତନାର ମଧ୍ୟ କେନ୍ଦ୍ର ଥିଲା । ରାଜା ରାମମୋହନ ରାୟଙ୍କ ପ୍ରବର୍ତ୍ତିତ ବ୍ରାହ୍ମଧର୍ମ, କେଶବ ଚନ୍ଦ୍ର ସେନଙ୍କ ନବବିଧାନ ଆଦି ଧର୍ମ ଓ ସମାଜ ସଂସ୍କାର ମୂଳକ ଆନ୍ଦୋଳନରେ ଭାରତ-ବାସୀଙ୍କ ସାମାଜିକ ଓ ରାଜନୈତିକ ଜୀବନ ଚଞ୍ଚଳ ହୋଇଉଠିଲା । ବ୍ରାହ୍ମଧର୍ମ ଆନ୍ଦୋଳନ ହିନ୍ଦୁମାନଙ୍କର ସ୍ୱଧର୍ମ ପ୍ରତି ନିଷ୍ଠା ଓ ଅନ୍ଧ କୁସଂସ୍କାରର ବିରୋଧୀ ହୋଇ ହିନ୍ଦୁଧର୍ମକୁ ଅଧିକ ପରିଶୁଦ୍ଧ କରିବା ପାଇଁ ଉଦ୍ୟମ କରିଥିଲା । ସ୍ୱାମୀ ବିବେକାନନ୍ଦ ଶକ୍ତି ଓ କର୍ମ ସମ୍ପର୍କୀୟ ଧର୍ମ ବିଚାରର ପ୍ରସାର କରି ଭାରତୀୟ ଜାତୀୟତାବାଦର ସୁସ୍ଥ ବିକାଶ ପାଇଁ ଭିତ୍ତି ସ୍ଥାପନ କରିଥିଲେ । ଦୁର୍ବଳତା ହିଁ ଏକମାତ୍ର ପାପ । ତେଣୁ ମାନସିକ, କାୟିକ ଏବଂ ଆଧ୍ୟାତ୍ମିକ ଦୁର୍ବଳତାର ସକଳ କାରଣକୁ ବର୍ଜନ କରିବା ପାଇଁ ସ୍ୱାମୀଜୀ ବଜ୍ର ନିର୍ଘୋଷ କଣ୍ଠରେ ଉଦ୍‌ବେ ଧନ ଦେଉଥିଲେ । କବିଗୁରୁ ରବୀନ୍ଦ୍ରନାଥ ଭାରତୀୟ ପରମ୍ପରା, ସଂସ୍କୃତି ଓ ଶିକ୍ଷାର ଯୁଗୋପଯୋଗୀ ସଂସ୍କାର ପାଇଁ ଉଦ୍ୟମ କରିଥିଲେ ।

ବୈପ୍ଳବିକ ଦେଶପ୍ରୀତିର ବାର୍ତ୍ତାବହ 'ଯୁଗାନ୍ତର' ମାସିକ ପତ୍ର ଏବଂ ଅରବିନ୍ଦ ଘୋଷଙ୍କ ସମ୍ପାଦନାରେ 'ବନ୍ଦେମାତରମ୍' ସ୍ୱଦେଶୀ ଆନ୍ଦୋଳନକୁ ଗତିଶୀଳ କରିଥିଲା । ରାଜଦ୍ରୋହ ଅଭିଯୋଗରେ ତିନିବାର କାରାବରଣ କରି ୧୯୧୦ ଖ୍ରୀଷ୍ଟାବ୍ଦରେ ପଣ୍ଡିଚେରୀକୁ ପଳାଇ ଯାଇ ଅରବିନ୍ଦ 'ଯୋଗୀ ଶ୍ରୀ ଅରବିନ୍ଦ'ରେ ପରିଣତ ହେଲେ । ବିଦେଶୀ ବର୍ଜନ ଆନ୍ଦୋଳନ ସର୍ବତ୍ର ବ୍ୟାପିଗଲା । ଯୁବକ ରାଜେନ୍ଦ୍ର ପ୍ରସାଦ ଏହି ଆନ୍ଦୋଳନ ଦ୍ୱାରା ଗଭୀର ଭାବରେ ପ୍ରଭାବିତ ହୋଇ 'ଡନ୍ ସୋସାଇଟି'ର ସଭ୍ୟ ହେଲେ । ବାମପନ୍ଥୀ ବିପ୍ଳବୀ ମାନବେନ୍ଦ୍ର ରାୟ (ନରେନ୍ ଭଟ୍ଟାଚାର୍ଯ୍ୟ), ସ୍ୱିଷ୍ଟର ନିବେଦିତା ସତୀଶଚନ୍ଦ୍ର ମୁଖାର୍ଜି ପ୍ରଭୃତି ସମାଜସେବୀମାନେ ଏହି ଅନୁଷ୍ଠାନ ସହିତ ସମ୍ପୃକ୍ତ ଥିଲେ । ରାଜେନ୍ଦ୍ର ପ୍ରସାଦ ମଧ୍ୟ କଲିକତାରେ ପ୍ରବାସୀ ବିହାରୀମାନଙ୍କୁ ନେଇ 'ବିହାରୀ କ୍ଲବ' ଗଠନ କଲେ । ସେ ବିହାରୀ ଛାତ୍ର ସମ୍ମିଳନୀର ପ୍ରଥମ ଅଧିବେଶନ ପାଟନା ମହାନଗରୀରେ ୧୯୦୬ ମସିହାରେ ଆହ୍ୱାନ କରିଥିଲେ । ସେହି ବର୍ଷ ସେ ବିଶ୍ୱବିଦ୍ୟାଳୟରେ ପ୍ରଥମ ଶ୍ରେଣୀରେ ପ୍ରଥମ ହୋଇ ବି. ଏ. ପାସ କରିଥିଲେ । ଆଇ. ସି. ଏସ୍. ପରୀକ୍ଷା ଦେବା ପାଇଁ ସେ ଲଣ୍ଡନ ଯିବାକୁ ଚାହୁଁଥିଲେ । ବନ୍ଧୁଆଡୁ ଆର୍ଥିକ ସାହାଯ୍ୟର ପ୍ରତିଶ୍ରୁତି ମିଳିଲା । ପିତା ପୁତ୍ରକୁ ବିଦେଶ ଛାଡ଼ିବାକୁ ମନା କରିବାରୁ ସେ ଲଣ୍ଡନ ଯିବାରୁ କ୍ଷାନ୍ତ ହେଲେ ଏବଂ ଆଇ. ସି. ଏସ୍. ହୋଇପାରିଲେ ନାହିଁ ।

୧୯୦୮ ମସିହାରେ ସେ ପ୍ରଥମ ଶ୍ରେଣୀରେ ପ୍ରଥମ ହୋଇ ଏମ୍. ଏ. ପାସ୍ କଲେ । କିଛି ଦିନ ସେ ମୁଜାଫରପୁର କଲେଜରେ ଅଧ୍ୟାପକ ହେଲେ । ଚାକିରୀ ଛାଡ଼ି ସେ କଲିକତା ଆଇନ୍ କଲେଜରେ ନାମ ଲେଖାଇଲେ । ଖ୍ରୀ. ୧୯୧୦ରେ ସେ ଆଇନ ପରୀକ୍ଷାରେ ଉତ୍ତୀର୍ଣ୍ଣ ହୋଇ କଲିକତା ହାଇକୋର୍ଟରେ ଓକିଲାତି କଲେ । ସେହି କାଳରେ ସେ କଲିକତା ସିଟି କଲେଜର ଅଧ୍ୟାପକ ମଧ୍ୟ ଥିଲେ । ସେହି ସମୟରେ ଓଡ଼ିଶାର ଭାଗୀରଥ ମହାପାତ୍ର ପ୍ରଭୃତି ତାଙ୍କର ଛାତ୍ର ଥିଲେ ।

ଖ୍ରୀ. ୧୯୧୨ରେ ବିହାର ଓଡ଼ିଶା ବଙ୍ଗ ପ୍ରଦେଶରୁ ଅଲଗା ହୋଇଥିଲା ଏବଂ ପାଟନା ଏହି ନୂତନ ପ୍ରଦେଶର ରାଜଧାନୀ ହେଲା । ପାଟନାରେ

ହାଇକୋର୍ଟ ଖୋଲିବାରୁ ରାଜେନ୍ଦ୍ର ପ୍ରସାଦ କଲିକତା ଛାଡ଼ି ପାଟନାରେ ଓକିଲାତି କଲେ । ସେତେବେଳେ ସର୍ବାପନ୍ତ ଗୋପାଳକୃଷ୍ଣ ଗୋଖ୍‌ଲେ ହିନ୍ଦ୍ ସେବକ ସମାଜ'ର ସଭ୍ୟ ସଂଗ୍ରହ ପାଇଁ କଲିକତା ଆସିଥାନ୍ତି । ସେ ରାଜେନ୍ଦ୍ର ପ୍ରସାଦଙ୍କୁ ଏହି ଅନୁଷ୍ଠାନରେ 'ଜୀବନ ଦାନୀ' ସଭ୍ୟ ଭାବରେ ଯୋଗଦେବା ପାଇଁ କହିଥିଲେ । ରାଜେନ୍ଦ୍ର ଏହି ନିବେଦନରେ ଆଲୋଡ଼ିତ ହୋଇଥିଲେ । ପରିବାରର ଦାୟିତ୍ୱ ପାଇଁ ଅର୍ଥ ଅର୍ଜନର କର୍ତ୍ତବ୍ୟ ଏବଂ ଅନ୍ୟ ପଟରେ ଜାତୀୟ ଅଭ୍ୟୁତ୍‌ଥାନ ପାଇଁ ସେବା ଓ ସାଧନ କ୍ଷେତ୍ରରେ ନିରଳସ, ନିଃସ୍ୱାର୍ଥପର ତ୍ୟାଗ । ଜମିଦାରୀର ଆୟ କମି ଆସୁଥାଏ । ସମଗ୍ର ପରିବାରର ସେ ସେତେବେଳେ ଆଶା ଭରସାର ପ୍ରତୀକ । ଏହି ଧର୍ମସଙ୍କଟରେ ପଡ଼ି ସେ ବଡ଼ଭାଇଙ୍କୁ ଚିଠି ଲେଖିଲେ । ଧନର ଲାଳସା କିମ୍ବା ଦାରିଦ୍ୟର କଷାଘାତରେ ବିଚଳିତ ନ ହୋଇ ସେ ଜନସେବୀ ହେବାପାଇଁ ନିଜର ସିଦ୍ଧାନ୍ତ ଜଣାଇଦେଲେ । ତେଣୁ ପରିବାର ତାଙ୍କ ଉପରେ ଆଉ ଆଶା ରଖିବା ଅନୁଚିତ ବୋଲି ସେ ଲେଖିଥିଲେ । ଅଗ୍ରଜ ସେ ଚିଠି ପଢ଼ି କାନ୍ଦିଲେ । ମା' ନୀରବ ରହିଲେ; କିନ୍ତୁ ଭଉଣୀ ଭଗବତୀ ଏ ପ୍ରସ୍ତାବର ତୀବ୍ର ବିରୋଧ କଲେ । ଫଳରେ ରାଜେନ୍ଦ୍ର ଆଉ ହିନ୍ଦ୍ ସେବକ ସମାଜର ସଭ୍ୟ ହୋଇପାରିଲେ ନାହିଁ ।

ଆଇନ ବ୍ୟବସାୟରେ ସେ ବିଖ୍ୟାତ ହୋଇଥିଲେ । ସର୍ବଦା ତାଙ୍କ ଘିରସ୍ତା ମହକିଲମାନଙ୍କଦ୍ୱାରା ଗହଳି ଥିଲା । ତାଙ୍କୁ ଜଜ୍ ଓ ମହକିଲମାନେ ସ୍ନେହ ଓ ଭକ୍ତି କରୁଥିଲେ । ସାକ୍ଷୀଙ୍କୁ ଜେରା କରିବାରେ ତାଙ୍କର ବିଜ୍ଞାନ-ସମ୍ମତ ସୂକ୍ଷ୍ମ ଓ ସାଧୁତା ଅତି ଉଚ୍ଚକୋଟିର ଥିଲା । ଅର୍ଥଲୋଭରେ ସେ ମହକିଲମାନଙ୍କୁ ଅଯଥା ହଇରାଣ ହରକତ କରୁ ନ ଥିଲେ । ଭଲ ଭାବରେ ଜେରା କରିବାର ସମ୍ଭାବନା ନ ଥିବା ମକଦ୍ଦମା ସେ ହାତକୁ ନେଉ ନ ଥିଲେ । ଆଇନ ଶାସ୍ତ୍ରରେ ତାଙ୍କର ଅଦ୍ୱିତୀୟ ପାଣ୍ଡିତ୍ୟ ପାଇଁ ତାଙ୍କୁ ଏଲାହାବାଦ ବିଶ୍ୱବିଦ୍ୟାଳୟ ସମ୍ମାନସୂଚକ 'ଡକ୍ଟର ଅଫ୍ ଲ' ଉପାଧି ପ୍ରଦାନ କରିଥିଲେ । ପରୋପକାରୀ ଏବଂ ଦାନୀ ଏହି ପଣ୍ଡିତ ଜନସେବୀ ପରିସ୍ଥିତିର ଚାପରେ କିଛୁକାଳ ଜୀବିକାର୍ଜନ କରିଥିଲେ । କିନ୍ତୁ ସ୍ୱାଭାବିକ ପ୍ରବୃତ୍ତି ଓ

ଆସକ୍ତ ପୁନରୁଜ୍ଜୀବିତ ହୋଇ ଦେଶମାତୃକାର ସେବାପୀଠରେ ତାଙ୍କୁ ଏକ ସେବକରେ ପରିଣତ କରିଦେଲା । ଏହି ବାସନାରେ କ୍ଷମତା ଲୋଭ ପରିବର୍ତ୍ତେ ପରିଶୁଦ୍ଧ ଦେଶପ୍ରାଣତା ବଳିଷ୍ଠ ଭାବରେ ଆତ୍ମପ୍ରକାଶ କରିଥିଲା । ତେଣୁ ରୋଜଗାର ସମୃଦ୍ଧି ଏବଂ ସମାଜ ସୁନ୍ଦର ନରାପତ୍ତା ଛାଡ଼ି ରାଜେନ୍ଦ୍ର ପ୍ରସାଦ ଦେଶର ମୁକ୍ତି ଆନ୍ଦୋଳନରେ ସକ୍ରିୟ ଅଂଶ ଗ୍ରହଣ ପାଇଁ ତତ୍କାଳୀନ ଶଙ୍କାକୁଳ ଜନଜୀବନରେ ଯୋଗ ଦେଇଥିଲେ ।

ରାଜେନ୍ଦ୍ର ପ୍ରସାଦ ବି. ଏ. ପାସ୍. କରିସାରିଥାନ୍ତି । ସେତିକବେଳେ ଖ୍ରୀ. ୧୯୦୬ ମସିହାରେ କଲିକତା କଂଗ୍ରେସରେ ଦାଦାଭାଇ ନାରୋଜୀ ସଭାପତି ହୋଇଥାନ୍ତି । ରାଜେନ୍ଦ୍ର ଏହି କଂଗ୍ରେସ ଅଧିବେଶନରେ ସ୍ୱେଚ୍ଛା-ସେବକ ଭାବରେ ଯୋଗ ଦେଇଥିଲେ । ଜାତୀୟ କଂଗ୍ରେସ ଖ୍ରୀ. ୧୮୮୫ରେ ପ୍ରତିଷ୍ଠିତ ହୋଇ ୧୯୦୦ ଖ୍ରୀଷ୍ଟାବ୍ଦ ଯାଏ କେବଳ ଶାସନ କଳର ସହାୟତା କାମନା କରି ଦେଶସେବାର ପରିସର ସୀମିତ ରଖିଥିଲେ । ଦକ୍ଷିଣ ଆଫ୍ରିକାର ପ୍ରବାସୀ ଭାରତୀୟମାନଙ୍କର ଏକ ପ୍ରସ୍ତାବ କଂଗ୍ରେସରେ ଗୃହୀତ କରାଇବା ପାଇଁ ଗାନ୍ଧିଜୀ କଂଗ୍ରେସ ଅଧିବେଶନରେ ୧୯୦୧ ରେ ଯୋଗ ଦେଇଥିଲେ । ସେ ଉକ୍ତ ପ୍ରସ୍ତାବ ପାଇଁ ମାତ୍ର ପାଞ୍ଚ ମିନିଟ୍ ସମୟ ପାଇଥିଲେ । ସଂକୀର୍ଣ୍ଣ ଓ କର୍ମପ୍ରବଣତା ଅଭାବରୁ କଂଗ୍ରେସ ନିଷ୍କ୍ରିୟ ହୋଇପଡ଼ୁଛି ବୋଲି ଗାନ୍ଧିଜୀ ଆଦୌ ସନ୍ତୁଷ୍ଟ ହୋଇ ନ ଥିଲେ ।

ସେତେବେଳେ ଲୋକମାନ୍ୟ ବାଳଗଙ୍ଗାଧର ତିଳକ, ମହାନ୍ ବିପ୍ଳବୀ ଅରବିନ୍ଦ କଂଗ୍ରେସ ନେତୃତ୍ୱର ଆପୋଷଧର୍ମୀ ରାଜନୀତିର ତୀବ୍ର ବିରୋଧ କରୁଥିଲେ । ସେମାନେ ବଳିଷ୍ଠ ସଂଗ୍ରାମ ଆନ୍ଦୋଳନଦ୍ୱାରା ଭାରତୀୟ ଜାତୀୟତାବାଦର ପ୍ରତିଷ୍ଠା ଚାହୁଁଥିଲେ । ଏହି ମତକୁ ଉଗ୍ରବାଦ ବୋଲି କହି ଫିରୋଜସାହା ମେହେଟା, ଗୋପାଳକୃଷ୍ଣ ଗୋଖଲେ, ସୁରେନ୍ଦ୍ର ନାଥ ବାନାର୍ଜୀ ପ୍ରମୁଖ ଉଦାରବାଦୀ ନେତାମାନେ କଂଗ୍ରେସର ଶାସନକଳ ସହିତ ସହଯୋଗ ନୀତି ବଜାୟ ରଖିବାକୁ ଚାହୁଁଥିଲେ । ସେତେବେଳକୁ ବଙ୍ଗଭଙ୍ଗ ପ୍ରସ୍ତାବ ଏବଂ ତଜ୍ଜନିତ ଜନ-ଅସନ୍ତୋଷ ବଳିଷ୍ଠ ହୋଇସାରିଲାଣି ।

ଏହି ପରିପ୍ରେକ୍ଷୀରେ ଖ୍ରୀ. ୧୯୦୬ର କଲିକତା କଂଗ୍ରେସରେ 'ସ୍ୱରାଜ' ଦାବୀ ଜାତୀୟ କଂଗ୍ରେସର ଲକ୍ଷ୍ୟ ରୂପେ ସ୍ୱୀକୃତ ହୋଇଗଲା । ଆମର ରାଜନୈତିକ ଅଧିକାର ହାସଲ କରିବା ପାଇଁ ବିଦେଶୀ ଦ୍ରବ୍ୟ ବର୍ଜନ ଏକ ଆୟୁଧ ହିସାବରେ ଗ୍ରହଣ କରାଗଲା । ରାଜେନ୍ଦ୍ର ଏହି ଅଧିବେଶନରେ ସରୋଜିନୀ ନାଇଡୁ, ମହାମନା ମଦନମୋହନ ମାଳବ୍ୟ, ଓ. ଏମ୍. ଏ. ଜିନ୍ନା ପ୍ରଭୃତିଙ୍କ ଉଦ୍‌ବୋଧନ ଶୁଣିଥିଲେ ।

ପରବର୍ତ୍ତୀ ସୁରଟ୍ କଂଗ୍ରେସରେ ତିଳକ ମହାରାଜ ବିପ୍ଳବ କରି ସ୍ୱଦେଶୀ ଆନ୍ଦୋଳନଦ୍ୱାରା ସ୍ୱାଧୀନତା ହାସଲ ପାଇଁ ଦାବୀ କଲେ । ଜିନ୍ନାଙ୍କର ମଧ୍ୟ ସେହି ମତ ଥିଲା । 'କେଶରୀ' ପତ୍ରିକାରେ ତିଳକ ମହାରାଜଙ୍କ ବୈପ୍ଳବିକ ଲେଖାରେ ଅନୁପ୍ରାଣିତ ହୋଇ ସ୍ୱଦେଶୀ ଆନ୍ଦୋଳନ ମହାରାଷ୍ଟ୍ରରେ ବଳିଷ୍ଠ ହୋଇ ଉଠିଲା । ବ୍ରିଟିଶ ସରକାର ତାଙ୍କୁ ଅଠରମାସ କାରାଗାରରେ ବନ୍ଦୀ କଲେ । ଦରଖାସ୍ତ, ପ୍ରତିବାଦ ଏବଂ ପ୍ରାର୍ଥନା ଜରିଆରେ କଂଗ୍ରେସର ଉଦାରବାଦୀମାନଙ୍କ ମତବାଦକୁ ବିପ୍ଳବୀ ଅରବିନ୍ଦ ବିରୋଧ କରୁଥିଲେ । ସେ ମଧ୍ୟ ୧୯୦୮ ରୁ ୧୯୧୦ ଭିତରେ ତିନିଥର ଜେଲଦଣ୍ଡ ଭୋଗିଥିଲେ । ପରେ ପରେ ତିଳକ ମହାରାଜ ମାଣିକତୋଲା ଷଡ଼ଯନ୍ତ୍ରରେ ଦୋଷୀ ସାବ୍ୟସ୍ତ ହୋଇ ୮ ବର୍ଷ କାରାଦଣ୍ଡ ପାଇଲେ । ପଞ୍ଜାବକେଶରୀ ଲାଲା ଲଜପତ୍ ମଧ୍ୟ ନିର୍ବାସିତ ହେଲେ । ଦେଶ ତଥା କଂଗ୍ରେସର ଏହି ସଙ୍କଟସନ୍ଧିବେଳେ ରାଜେନ୍ଦ୍ର ପ୍ରସାଦ କଂଗ୍ରେସର ସଭ୍ୟ ଶ୍ରେଣୀଭୁକ୍ତ ହେଲେ ।

୧୯୧୨ ମସିହାରେ ବାଙ୍କିପୁର କଂଗ୍ରେସରେ ବହୁ ଉଚ୍ଚଶିକ୍ଷିତ ବ୍ୟକ୍ତିଙ୍କ ସମେତ ଜବାହରଲାଲ ନେହେରୁ କଂଗ୍ରେସ ସଭ୍ୟ ହେଲେ । ୧୯୧୪ରେ ପ୍ରଥମ ବିଶ୍ୱଯୁଦ୍ଧ ଆରମ୍ଭ ହେଲା । ତା' ପୂର୍ବରୁ ଜାତୀୟ କଂଗ୍ରେସ ସେପରି ଶକ୍ତିଶାଳୀ ହୋଇ ନ ଥିଲା । କଂଗ୍ରେସ ମୁଷ୍ଟିମେୟ ବୁଦ୍ଧିଜୀବୀଙ୍କ ପରିସରରେ ଆବଦ୍ଧ ଥିଲା । କିନ୍ତୁ ବିଶ୍ୱଯୁଦ୍ଧରେ ଧନ ଓ ଜନ ପାଇଁ ସାଧାରଣ ଲୋକଙ୍କ ଉପରେ ସରକାରୀ ଚାପ ପଡ଼ିଲା । ଖାଦ୍ୟଦ୍ରବ୍ୟର ମୂଲ୍ୟ ହୁ ହୁ ହୋଇ ବଢ଼ିଗଲା । ପ୍ରକୃତ ସମ୍ବାଦ ଓ ମତାମତ ପ୍ରକାଶର ସୁଯୋଗକୁ ସୀମିତ କରିଦିଆଗଲା । ଭିନ୍ନ ମତକୁ ଦବାଇବା ପାଇଁ ଭାରତରକ୍ଷା ଆଇନ

ବଳରେ ବ୍ୟାପକ ଗିରଫଦାରି ଚାଲିଲା । ଏହି ପରିସ୍ଥିତିରେ କଂଗ୍ରେସର ଉଦାରବାଦୀ ନେତୃତ୍ୱର ପ୍ରଭାବ କମିଗଲା । ଏହି ସମୟରେ ତିଲକ ମହାରାଜ କାରାଦଣ୍ଡ ଭୋଗ କରି ସାରି ଜନଜୀବନକୁ ଫେରିଆସିଲେ । କାରାବନ୍ଦୀ ତାଙ୍କର ମାନସିକ ଦୃଢ଼ତା, ନିଷ୍ଠା ଓ ସିଦ୍ଧାନ୍ତକୁ ଟଳାଇ ପାରି ନ ଥିଲା । ଶ୍ରୀମଦ୍ ଭଗବତ୍‌ଗୀତା ତାଙ୍କର ଧ୍ୟେୟ । ସେ କାରାବାସରେ ଅପୂର୍ବ ଗୀତାଭାଷ୍ୟ ପ୍ରଣୟନ କରିଯାଇଛନ୍ତି । ଫଳାଫଳରେ ଲୋଭ ନ ରଖି କର୍ମ କରିଯିବା ପାଇଁ ଗୀତାର ଅମୃତବାଣୀ ଜନ-ଜୀବନର ଧ୍ୱନି ତାଙ୍କ ଆଦର୍ଶ । ଏହି ଆଦର୍ଶକୁ ସାମାଜିକ ଜୀବନରେ ପ୍ରୟୋଗ କରି ଭାରତୀୟ ସଂସ୍କୃତିକୁ ଗତିଶୀଳ କରାଇବା ପାଇଁ ସେ ଆଜୀବନ ସାଧନା କରିଗଲେ ।

୧୯୧୫ ମସିହା ଫେବୃଆରି ମାସରେ ମହାମତି ଗୋଖଲେ ଇହଧାମ ତ୍ୟାଗ କଲେ । ତେଣୁ ଦେଶର ଅପ୍ରତିଦ୍ୱନ୍ଦ୍ୱୀ ନେତୃତ୍ୱର ଦାୟିତ୍ୱ ତିଲକ ମହାରାଜ ନେଲେ । ଇଂରେଜ ସରକାର ମୁସଲମାନମାନଙ୍କୁ ସ୍ୱତନ୍ତ୍ର ନିର୍ବାଚନ ମଣ୍ଡଳୀର ସୁଯୋଗ ଦେଇ ହିନ୍ଦୁ-ମୁସଲମାନ ସାମ୍ପ୍ରଦାୟିକ ବିଦ୍ୱେଷର ବୀଜବପନକରୁଥାନ୍ତି; ମାତ୍ର ଉଭୟ ସମ୍ପ୍ରଦାୟ ସରକାରଙ୍କ ବିରୁଦ୍ଧରେ ମିଳିତ କାର୍ଯ୍ୟାନୁଷ୍ଠାନର ସିଦ୍ଧାନ୍ତ ଗ୍ରହଣ କରି ସ୍ୱାୟତ୍ତ ଶାସନର ଦାବୀ ଉଠାଇଲେ । ଭାରତୀୟ ଜାତୀୟ ଆନ୍ଦୋଳନର ଏହି ସନ୍ଧିସନ୍ଧିବେଳେ ଦକ୍ଷିଣ ଆଫ୍ରିକାରୁ ସଦ୍ୟ ଫେରିଥିବା ସଫଳ ବିପ୍ଳବୀ ଗାନ୍ଧିଜୀଙ୍କ ସହିତ ରାଜେନ୍ଦ୍ର ପ୍ରସାଦଙ୍କର ସାକ୍ଷାତ ହେଲା । ଗାନ୍ଧିଜୀଙ୍କର ଜନସେବା ମୂଳକ ରଚନାତ୍ମକ କାର୍ଯ୍ୟ ଏବଂ ସତ୍ୟାଗ୍ରହ ପ୍ରତି ବିଶ୍ୱାସ ଓ ଆସ୍ଥା କ୍ରମେ ବଳଶାଳୀ ହେଉଥାଏ । ସେତେବେଳେ ବିହାରର ଚମ୍ପାରନ୍‌ରେ ନିର୍ଯ୍ୟାତିତ ନୀଳ-ଚାଷୀଙ୍କ ବିଷୟରେ ଗାନ୍ଧିଜୀ ୧୯୧୭ ମସିହା ଅପ୍ରେଲ ମାସରେ ପଦକ୍ଷେପ ନେଲେ । ସେ ସତ୍ୟାଗ୍ରହ ନୀତିର ସଫଳ ପ୍ରୟୋଗକରି ଚାଷୀମାନଙ୍କର ଦାବୀ ପୂରଣ କରାଇଲେ । ଏହି ଶାନ୍ତିପୂର୍ଣ୍ଣ ଅହିଂସ ସତ୍ୟାଗ୍ରହ ନୀତିକୁ ଜାତିର ମୁକ୍ତି ଆନ୍ଦୋଳନରେ ଉପଯୋଗ କରିବା ପାଇଁ ଗାନ୍ଧିଜୀ ସିଦ୍ଧାନ୍ତ ନେଲେ । ଚମ୍ପାରନ୍‌ରେ ସପ୍ତଦଶ ଶତାବ୍ଦୀଠାରୁ ଇଷ୍ଟ-ଇଣ୍ଡିଆ କମ୍ପାନୀ ନୀଳ ଉତ୍ପାଦନର ଏକଚ୍ଛତିଆ ଅଧିକାର ହାସଲ କରି ଅଧିକ ଅର୍ଥ ଲାଭର ଲୋଭରେ ଚାଷୀମାନଙ୍କୁ ଅମାନୁଷିକ ଭାବରେ ଶୋଷଣ କରି ଆସୁଥିଲେ । ଏହି ଅତ୍ୟାଚାରର ପ୍ରତିକାର

ଲିଲା କର୍ତ୍ତୃପକ୍ଷଙ୍କ ଦ୍ୱାରା ସମ୍ଭବପର ନ ଥିଲା । ଶାସକ ଏବଂ ନୀଳ ବ୍ୟବସାୟୀ ଉଭୟେ ଇଂରେଜୀ ଲୋକ ଥିବାରୁ ସେମାନଙ୍କ ଭିତରେ ବୁଝାମଣା ଥିଲା । ଚାଷୀମାନଙ୍କୁ ନ୍ୟାୟସଙ୍ଗତ ମଜୁରି ମିଳୁ ନ ଥିଲା ଫଳରେ ଚାଷୀମାନେ ନୀଳଚାଷ କରିବାକୁ ରାଜି ହେଲେ ନାହିଁ । ସୁତରାଂ କମ୍ପାନୀ କର୍ମଚାରୀମାନେ ଜୋରଜୁଲମ ଅତ୍ୟାଚାର କରି ସେମାନଙ୍କୁ କାମରେ ଲଗାଉଥିଲେ; ଏପରିକି କଥା ନ ମାନିଲେ ଗୁଳି କରି ମାରିଦେଉଥିଲେ । ପ୍ରାୟ ୧୬ ହଜାର ଏକର ଜମିରେ ନୀଳଚାଷ କରୁଥିବା ହଜାର ଚାଷୀଙ୍କର ଦାଉଦାଉଇବ କେହି ଶୁଦ୍ଧା ଶୁଣିବାକୁ ନ ଥିଲା । ୧୯୧୦ ମସିହାରେ ଜର୍ମାନୀର କୃତ୍ରିମ ରଙ୍ଗର ଚାହିଦା ବିଦେଶୀ ବଜାରରେ ବଢିବାରୁ ନୀଳର ମୂଲ୍ୟ କମି ଆସିଲା । ଏହି କ୍ଷତି ଭରଣା କରିବାକୁ ଇଂରେଜୀ ବ୍ୟବସାୟୀମାନଙ୍କର ଲୁଣ୍ଠନ ଓ ଅତ୍ୟାଚାରର ମାତ୍ରା ବଢିଗଲା । 'ବେଟିହା' ଗଡ଼ଜାତର ରାଜା ଅପୁତ୍ରକ ହୋଇ ମରିଗଲା ପରେ ବିଧବା ରାଣୀଙ୍କୁ ପାଗଳୀ ବୋଲି ଘୋଷଣା କରି ଜଣେ ଗୋରା ନୀଳଚାଷୀଙ୍କୁ ସେହି ରାଜ୍ୟରେ ଶାସକ ନିଯୁକ୍ତ କରାଗଲା । ତେଣୁ ନୀଳଚାଷୀମାନଙ୍କ ଉପରେ ଅତ୍ୟାଚାର ଅମାନୁଷିକ ଏବଂ ଅସହ୍ୟ ହୋଇ ଉଠିଲା ।

ଗାନ୍ଧିଜୀ ଏହି ସଙ୍କଟର ଅବସାନ ପାଇଁ ଖ୍ରୀ. ୧୯୧୭ ଅପ୍ରେଲ ୭ ତାରିଖରେ କଲିକତାରୁ ପାଟନା ଗଲେ । ପାଟନାରେ ରାଜେନ୍ଦ୍ର ପ୍ରସାଦଙ୍କ ପାଖରେ ସେ ରହିଲେ । ସେଠାରେ ବିଲାତ ଛାତ୍ରଜୀବନର ସହପାଠୀ ମଜହୁଲ ହକ୍‌ଙ୍କ ସହିତ ଆଲୋଚନା କରି ଗାନ୍ଧିଜୀ ତାଙ୍କ ପରାମର୍ଶ କ୍ରମେ ମୁଜାଫରପୁର ଗଲେ । ସେଠାରେ ଜେ. ବି. କୃପାଲନୀ ଏବଂ ଏସ୍. ଆର. ମାଲକାନିଙ୍କ ସହଯୋଗ ସେ ପାଇଲେ । ରାଜେନ୍ଦ୍ର ପ୍ରସାଦ ଗାନ୍ଧିଜୀଙ୍କ ନିକଟରେ ପହଞ୍ଚିଲେ । କମିଶନରଙ୍କ ସହ ଗାନ୍ଧିଜୀ ଆଳାପ ଆଲୋଚନା କଲେ । କମିଶନର ସମସ୍ୟାର ସମାଧାନ ପରିବର୍ତ୍ତେ ଗାନ୍ଧିଜୀଙ୍କୁ ମୁଜାଫର-ପୁର ଛାଡ଼ି ଚାଲିଯିବାକୁ କହିଲେ । ଗାନ୍ଧିଜୀ ଏଥିରେ ଅସମ୍ମତ ହୋଇ ନୀଳଚାଷୀ ସଙ୍ଘର ସଭ୍ୟମାନଙ୍କ ସହିତ ଆଲୋଚନା କଲେ । ଚାଷୀମାନଙ୍କର ଅବସ୍ଥା ଅନୁଧ୍ୟାନ କରିବା ପାଇଁ ସେ ମୋତିହାରି ଗଲେ । ସେଠାର ଓକିଲମାନେ ଗାନ୍ଧିଜୀଙ୍କୁ ସାହାଯ୍ୟ କରିଥିଲେ । ଗାନ୍ଧିଜୀଙ୍କୁ ସେ ଜିଲ୍ଲା ଛାଡ଼ି

ଚାଲିଯିବାକୁ ଦଣ୍ଡବିଧି ଆଇନର ୧୪୪ ଧାରା ଅନୁଯାୟୀ ନୋଟିସ୍ ଦିଆଗଲା । ଗାନ୍ଧିଜୀ ଏ ନୋଟିସକୁ ନ ମାନି ମୋତିହାରିରେ ରହିଲେ । ରାଜେନ୍ଦ୍ର ପ୍ରସାଦ ବହୁ ସଂଖ୍ୟକ ଚାଷୀଙ୍କୁ ଗାନ୍ଧିଙ୍କ ନିକଟକୁ ଆଣୁଥିଲେ । ଇତିମଧ୍ୟରେ ତାଙ୍କର କାର୍ଯ୍ୟକଳାପ ପାଇଁ କାହିଁକି ଦଣ୍ଡାଦେଶ ନ ହେବ ବୋଲି ଗାନ୍ଧିଜୀଙ୍କୁ ସରକାରୀ ସମନ ଦିଆଗଲା । ରାଜେନ୍ଦ୍ର ପ୍ରସାଦ ପ୍ରମୁଖ ସେ ଅଞ୍ଚଳର ଲୋକଙ୍କୁ ସଂଗଠିତ କରିବାରେ ଲାଗିପଡ଼ିଲେ । ଗାନ୍ଧିଜୀ ଜେଲ୍ ଗଲେ । ତାଙ୍କ ସହିତ କାରାବରଣ ପାଇଁ ଶହ ଶହ ଲୋକ ବାହାରି ପଡ଼ିଲେ । ଗାନ୍ଧିଜୀ ବଡ଼ଲାଟଙ୍କୁ ଚିଠି ଲେଖିଲେ ଯେ ତାଙ୍କୁ ଜନସେବା କରିବାରେ ବାଧା ଦିଆଯାଉଛି । ଗାନ୍ଧିଜୀଙ୍କ ଉପରୁ ସବୁ କଟକଣା ଉଠିଗଲା । ଜନସାଧାରଣଙ୍କ ଭିତରେ ଚାଞ୍ଚଲ୍ୟ ଖେଳିଗଲା । ଗାନ୍ଧିଜୀ ପ୍ରାୟ ୪ ହଜାର ଚାଷୀଙ୍କର ଆପତ୍ତି ସଂଗ୍ରହ କଲେ । ସେ ନିମନ୍ତ୍ରଣ ପାଇ ବିହାରର ଲାଟ ସାହେବଙ୍କ ସହିତ ଏ ବିଷୟ ଚର୍ଚ୍ଚା କଲେ । ଚାଷୀମାନଙ୍କର ଦୁରବସ୍ଥାର ତଦନ୍ତ ପାଇଁ ସରକାରୀ କମିଟି ନିଯୁକ୍ତ ହେଲା । ଗାନ୍ଧିଜୀ ଏ କମିଟିରେ ସଭ୍ୟ ରହିଲେ । ବ୍ରଜକିଶୋର ପ୍ରସାଦ (ଜୟପ୍ରକାଶଜୀଙ୍କ ଶ୍ୱଶୁର) ଏବଂ ରାଜେନ୍ଦ୍ର ପ୍ରସାଦଙ୍କ ଚେଷ୍ଟାରେ ପ୍ରାୟ ୮ ହଜାର ଚାଷୀଙ୍କ ଲିଖିତ ଦାବୀ ସଂଗ୍ରହ କରାଯାଇଥିଲା । ଗାନ୍ଧିଜୀ ଅବଶିଷ୍ଟ କାର୍ଯ୍ୟଭାର ରାଜେନ୍ଦ୍ର ପ୍ରସାଦଙ୍କୁ ଦେଇ ଗଲେ ।

ଅତୀତ ଘଟଣାର ପୁନରାବୃତ୍ତି ପରିବର୍ତ୍ତେ ନୀଳଚାଷ କରିବାର ବାଧ୍ୟବାଧକତା, ଖଜଣା ବୃଦ୍ଧି ଆଦି ଅତ୍ୟାଚାରର ଅବସାନ ପାଇଁ ଆଲାପ ଆଲୋଚନା କରିବାରେ ଗାନ୍ଧିଜୀ ରାଜି ହୋଇଗଲେ । ଫଳରେ କମିଟିର ସୁପାରିଶ କାର୍ଯ୍ୟକାରୀ ହେଲା । ଚାଷୀମାନେ ଦେଇଥିବା ଅଧିକ ଖଜଣା ଫେରି ପାଇଲେ । ଗୋରା ଚାଷୀମାନଙ୍କର ଦୌରାତ୍ମ୍ୟ କମିଗଲା । ଚମ୍ପାରନ୍‌ରେ ଚାଷୀମାନଙ୍କର ଏ ବିଜୟ ସମଗ୍ର ବିହାରରେ ଜନଚେତନା ସୃଷ୍ଟିକଲା । ବିହାରର ଚାଷୀକୁଳକୁ ସଂଗଠିତ କରିବା ପାଇଁ ଜନସେବୀ ରାଜେନ୍ଦ୍ର ପ୍ରସାଦ ନେତୃତ୍ୱ ନେଲେ । ଚାଷୀମାନଙ୍କର ଅଯଥା ଭୟ ଓ ଭ୍ରାନ୍ତି କଟିଗଲା । ସେମାନଙ୍କ ସଂଗ୍ରାମ ବ୍ୟକ୍ତିଗତ ଭାବରେ ଗୋରାମାଲିକଙ୍କ ବିରୁଦ୍ଧରେ ନ ଥିଲା । ସେମାନେ ଅନ୍ୟାୟ ନୀତି ବିରୁଦ୍ଧରେ ନିର୍ଭୀକ ଭାବରେ

ଗାନ୍ଧିଙ୍କ ଓ ରାଜେନ୍ଦ୍ର ପ୍ରସାଦଙ୍କ ନେତୃତ୍ୱରେ ସଂଗ୍ରାମ କରୁଥିଲେ । ଅବସର ବିନୋଦନ କିମ୍ବା ପେଷା ନ ହୋଇ ତ୍ୟାଗପୂତ ଜନସେବା ଜୀବନଧାରା ଏକମାତ୍ର କର୍ମ ରୂପେ ବିବେଚିତ ହେଲା । ରକ୍ଷଣଶୀଳ ପରିବାରରେ ଲାଳିତ-ପାଳିତ ରାଜେନ୍ଦ୍ର ଜାତିଆଣ ମନୋଭାବରୁ ମୁକ୍ତ ହୋଇ ସବୁ ଜାତି ଲୋକଙ୍କ ସହିତ ମିଶିଲେ । ଆଡ଼ମ୍ବର ଗୁଡ଼ିକ ନିଜ ହାତରେ ଲୁଗାସଫା, ବାସନ ଧୂଆ-ମଜା କରି ବଡ଼ଲୋକୀ ଭୋଗବିଳାସ ପ୍ରତି ଦୁର୍ବଳତାରୁ ସେ ସମ୍ପୂର୍ଣ୍ଣ ମୁକ୍ତ ହେଲେ ।

ରାଜେନ୍ଦ୍ର ଚମ୍ପାରନ୍‌ଠାରୁ ଖଇରା ଗାନ୍ଧିଜୀଙ୍କ ଗହଣରେ ଗଲେ । ସେଠାରେ କୃଷୀମାନଙ୍କୁ ସଙ୍ଗଠିତ କରି ଅତ୍ୟଧିକ କର ଏବଂ ଅନ୍ୟାୟ ଦାବୀ ବିରୁଦ୍ଧରେ ସତ୍ୟାଗ୍ରହ ହେଲା । ଏଠାରେ ସତ୍ୟାଗ୍ରହୀମାନଙ୍କ ବିଜୟରେ ରାଜେନ୍ଦ୍ର ପ୍ରସାଦଙ୍କ ବିଶ୍ୱାସ ଓ ଅନୁରକ୍ତି ଗାନ୍ଧିଜୀଙ୍କ ପ୍ରତି ବଢ଼ିଗଲା । ୧ମ ବିଶ୍ୱଯୁଦ୍ଧ ୧୯୧୮ରେ ଶେଷ ହେଲା । ଦରଦାମ ଆହୁରି ବଢ଼ିଗଲା । ଦେଶବାସୀଙ୍କର ରାଜନୈତିକ ଚେତନା ବୃଦ୍ଧି ପାଇଲା । ତିଲକ ମହାରାଜଙ୍କର 'ସ୍ୱରାଜ ଆମର ଜନ୍ମଗତ ଦାବୀ'ର ଆହ୍ୱାନରେ ଯୁବକୁଳ ଅନୁପ୍ରାଣିତ ହୋଇଉଠିଲେ । ତେଣୁ ମଣ୍ଟେଗୁ-ଚେମସଫୋର୍ଡ ଶାସନ ସଂସ୍କାର କାର୍ଯ୍ୟକାରୀ ହେଲା । ସୀମିତ ଭାବରେ ସ୍ୱାୟତ୍ତ ଶାସନର ଅଧିକାର ମିଳିଲା । ବାସ୍ତବବାଦୀ ରାଜେନ୍ଦ୍ର ପ୍ରସାଦ ଏହି ପରିସ୍ଥିତିକୁ ସ୍ୱାଗତ କଲେ । ତାଙ୍କ ନିଷ୍ଠାପର ରାଜନୈତିକ ଜୀବନ ସଙ୍ଗଠିତ ଭାବରେ ଆଗେଇ ଚାଲିଲା । ତଥାପି ଆଭ୍ୟନ୍ତରୀଣ ବନ୍ଦୀମାନେ ଖଲାସ ହୋଇ ନ ଥାନ୍ତି । ଫଳରେ ଗାନ୍ଧିଜୀଙ୍କ ଆହ୍ୱାନରେ ଖ୍ରୀ. ୧୯୧୯ ଅପ୍ରେଲ ୧୬ ତାରିଖରେ ଭାରତବ୍ୟାପି ହରତାଳ ପାଳନ କରାଗଲା । ଜନଗଣଙ୍କର ସମବେତ ପ୍ରାର୍ଥନା ଏବଂ ପ୍ରତିବାଦ ସଭା କରିଆରେ ଜନସାଧାରଣଙ୍କର ମାନସିକ ଦୃଢ଼ତାର ବିକାଶ ପାଇଁ ଉଦ୍ୟମ ହେଲା । ଦିଲ୍ଲୀରେ ସତ୍ୟାଗ୍ରହ ଅଧିକ ଭାବରେ ସଫଳ ହେଲା । ହିନ୍ଦୁ ଓ ମୁସଲମାନମାନଙ୍କ ଏକ ମିଳିତ ଶୋଭାଯାତ୍ରା ଉପରକୁ ପୁଲିସ୍ ଗୁଳି ଚଳାଇଲା । ସ୍ୱାମୀ ଶ୍ରଦ୍ଧାନନ୍ଦ ଶହୀଦ ହେଲେ । ଫଳରେ ଦେଶସାରା ସଙ୍ଗଠିତ ଆନ୍ଦୋଳନ ତେଜି ଉଠିଲା । ସରକାର ଦୃଢ଼ହସ୍ତରେ ଆନ୍ଦୋଳନ ଦବାଇବା ପାଇଁ ଲାଗିପଡ଼ିଲେ । ପୋଲିସ ଓ ସୈନ୍ୟବାହିନୀ ଏହି ଗଣ-

ଆନ୍ଦୋଳନକୁ ଦମନ କରିବାରେ ଅସମର୍ଥ ହେଲେ । ଲୋକେ ମୃତ୍ୟୁବରଣ ପାଇଁ ନିର୍ଭୟରେ ଆଗେଇ ଆସିଲେ । ରାଜେନ୍ଦ୍ର ପ୍ରସାଦ ତତ୍କାଳୀନ ବିହାର ଓଡ଼ିଶା ପ୍ରଦେଶର ରାଜଧାନୀ ପାଟନାରେ ଶାନ୍ତିପୂର୍ଣ୍ଣ ଭାବେ ଏହି ଆନ୍ଦୋଳନର ପରିଚାଳକ ଥିଲେ ।

ଏହି ସତ୍ୟାଗ୍ରହ ଆନ୍ଦୋଳନ ଦମନ ପାଇଁ ସରକାରୀ ଅତ୍ୟାଚାର ପଞ୍ଜାବର ଜାଲିଆନାୱାଲାବାଗରେ ସାଂଘାତିକ ରୂପ ଧାରଣ କଲା । ସେଠାରେ ଏକ ପାଚିରିଘେରା ପାର୍କରେ ସତ୍ୟାଗ୍ରହୀଙ୍କର ସାଧାରଣ ସଭାକୁ ଅମାନୁଷିକ ଭାବରେ ଗୁଳି ଚାଳନା କରି ମଣିଷ ଶିକାର କରାଗଲା । ଏହି ଗୁଳିକାଣ୍ଡରେ ୩୭୯ ଜଣ ମରିଗଲେ ଏବଂ ୧୨୦୦ ଜଣ ଆହତ ହେଲେ । ରାଜେନ୍ଦ୍ର ପ୍ରସାଦ ଏହି ହତ୍ୟାକାଣ୍ଡର ପୃଷ୍ଠଭୂମିରେ ଜାଗ୍ରତ ଅନ୍ଦୋଳନରେ ପୂର୍ଣ୍ଣପ୍ରାଣରେ ଝାସ ଦେଲେ । ପରିବାରର ମୋହକୁ ପ୍ରତ୍ୟାଖ୍ୟାନ କରି ସେ ପୂରାପୂରି ଅସହଯୋଗୀ ହୋଇଗଲେ । ଖ୍ରୀ. ୧୯୧୯ରେ ବିହାର ରାଜନୈତିକ ସମ୍ମିଳନୀର ସଭାପତି ରୂପେ ସେ ସାରା ବିହାରରେ ଅସହଯୋଗ ଆନ୍ଦୋଳନ ଚଳାଇଦେବା ପାଇଁ ଘୋଷଣା କଲେ । ସେତେବେଳେ ଭାରତୀୟ ରାଜନୀତି ଗଗନରେ ଥିଲେ ଦୁଇ ଜ୍ୟୋତିଷ୍କ ତିଳକ ମହାରାଜ ଓ ମହାତ୍ମାଗାନ୍ଧୀ । ଦୁହେଁ ଆନ୍ତରିକ ଭାବରେ ଜନସେବୀ । ତିଳକ ମହାରାଜ ଲକ୍ଷ୍ୟ ହାସଲ ପାଇଁ ଆବଶ୍ୟକ ହେଲେ ବଳପ୍ରୟୋଗର ପକ୍ଷପାତୀ ଥିଲେ କିନ୍ତୁ ଗାନ୍ଧିଜୀ ଲକ୍ଷ୍ୟ ହାସଲ ତୁଳନାରେ ମାଧ୍ୟମର ସ୍ୱଚ୍ଛତା ଉପରେ ଗୁରୁତ୍ୱ ଦେଉଥିଲେ । ଉଭୟେ ଭାରତମାତାର କୃତୀ ସନ୍ତାନ । ତେଣୁ ତିଳକ ମହାରାଜ ମହାତ୍ମା ଗାନ୍ଧୀଙ୍କର ନୂତନ ନେତୃତ୍ୱକୁ ସୁଯୋଗ ଦେବା ପାଇଁ ସତ୍ୟାଗ୍ରହ ଆନ୍ଦୋଳନକୁ ସମର୍ଥନ କରିଥିଲେ । ସେହି ବର୍ଷ ୧୯୨୦ ଅଗଷ୍ଟ ପହିଲାରେ ସେ ପରଲୋକ ଗମନ କଲେ । ସେପ୍ଟେମ୍ବର ମାସରେ ଜାତୀୟ କଂଗ୍ରେସର ବିଶେଷ ଅଧିବେଶନରେ ଅସହଯୋଗ ଆନ୍ଦୋଳନ ନୀତି ଗୃହୀତ ହୋଇଗଲା । ତହୁଁ ଛାତ୍ରମାନେ ସରକାରୀ ସ୍କୁଲ ଓ କଲେଜ ଛାଡ଼ିବାକୁ ରାଜେନ୍ଦ୍ର ପ୍ରସାଦ ଆହ୍ୱାନ ଜଣାଇଥିଲେ । ମାତୃଭାଷାରେ ଶିକ୍ଷା ବ୍ୟବସ୍ଥା ପାଇଁ ସେ ବିହାରବାସୀଙ୍କୁ ନିବେଦନ କରିଥିଲେ । ରାଜେନ୍ଦ୍ର ପ୍ରସାଦଙ୍କ ଅଧ୍ୟକ୍ଷତାରେ ପାଟନା

ମହାନଗରୀରେ 'ଜାତୀୟ କଲେଜ' ପ୍ରତିଷ୍ଠା କରାଗଲା । ଏହି କଲେଜର ପୃଷ୍ଠଭୂମି ରୂପେ ଦୁଇଶହ ପ୍ରାଥମିକ ଓ ପଚାଶଟି ମାଧ୍ୟମିକ ଜାତୀୟ ଶିକ୍ଷାଳୟ ପ୍ରତିଷ୍ଠା କରାଗଲା ।

ଗାନ୍ଧିଜୀ ଏହିସବୁ ଅନୁଷ୍ଠାନର ସମନ୍ୱୟରେ ଜାତୀୟ ବିଶ୍ୱବିଦ୍ୟାଳୟ ପ୍ରତିଷ୍ଠା ପାଇଁ ମୌଲାନା ହକ୍‌ଙ୍କ ସହ ଚୂଲ୍ ଚନ୍ଦା ସଂଗ୍ରହ କରିଥିଲେ । ମୌଲାନା ସାହେବ ତାଙ୍କର ବାସଭବନ 'ସଦାକତ୍ ମଞ୍ଜିଲ୍'କୁ ବିଶ୍ୱବିଦ୍ୟାଳୟ ଉଦ୍ଦେଶ୍ୟରେ ଦାନ କରିଦେଲେ । ସେହି 'ସଦାକତ୍ ମଞ୍ଜିଲ୍' ସଦାକତ୍ ଆଶ୍ରମ ରୂପେ ଭାରତୀୟ ଜାତୀୟତାବାଦୀ ମୁକ୍ତି ଆନ୍ଦୋଳନର ଅନ୍ୟତମ ପୀଠ । ସେଠାରେ ପଚାଶ ବର୍ଷରୁ ଅଧିକକାଳ ରାଜେନ୍ଦ୍ର ପ୍ରସାଦ ରହି ଜାତୀୟ ଆନ୍ଦୋଳନରେ ବହୁ ଗୁରୁତ୍ୱପୂର୍ଣ୍ଣ ଭୂମିକା ନେଇଥିଲେ । ନାଗପୁର କଂଗ୍ରେସ ୧୯୨୦ ଡିସେମ୍ବର ମାସରେ ଅନୁଷ୍ଠିତ ହେଲା । ଜିନ୍ନା ପ୍ରଭୃତି ନେତାମାନେ ଏହି କଂଗ୍ରେସରେ ଗାନ୍ଧିଜୀଙ୍କ ନେତୃତ୍ୱକୁ ସ୍ୱୀକାର କରିଥିଲେ । 'ସ୍ୱରାଜ' କଂଗ୍ରେସର ମୁଖ୍ୟ ଲକ୍ଷ୍ୟ ଧାର୍ଯ୍ୟ ହେଲା । ଏହାର ପନ୍ଥାରୂପେ ଅସହଯୋଗ ଆନ୍ଦୋଳନକୁ ସ୍ୱୀକାର କରାଗଲା । ଭାଷାନୀତିରେ ପ୍ରଦେଶ ଗଠନ ନୀତି ଧାର୍ଯ୍ୟ ହୋଇଗଲା । ଉତ୍କଳମଣି ଗୋପବନ୍ଧୁ ଏବଂ ଉତ୍କଳରତ୍ନ ଭାଗୀରଥି ମହାପାତ୍ରଙ୍କ ନେତୃତ୍ୱରେ 'ଉତ୍କଳ ସମ୍ମିଳନୀ'ର ଏକ ପ୍ରତିନିଧି ଦଳ ନାଗପୁର କଂଗ୍ରେସକୁ ଯାଇଥିଲେ । ସେଠାରୁ ଫେରିଲାବାଟରେ ଚକ୍ରଧରପୁରରେ 'ଉତ୍କଳ ସମ୍ମିଳନୀ'ର ଏକ ବିଶେଷ ଅଧିବେଶନରେ ଉତ୍କଳ ସମ୍ମିଳନୀର ମୌଳିକ ଲକ୍ଷ୍ୟ ସହିତ ଜାତୀୟବାଦୀ ଆନ୍ଦୋଳନକୁ ମିଶାଇ ଦିଆଗଲା । ଜାତୀୟ ମହାସ୍ରୋତରେ ସାମିଲ ହୋଇ ଉତ୍କଳର ରାଜନୀତିକୁ ନବ ପ୍ରତିଷ୍ଠିତ ଉତ୍କଳ ପ୍ରଦେଶ କଂଗ୍ରେସ କମିଟି ନେତୃତ୍ୱ ଦେଲା । ଏହା କାର୍ଯ୍ୟକାରୀ କରାଇବା ପାଇଁ ଉତ୍କଳରତ୍ନ ଭାଗୀରଥି ତାଙ୍କର ଗୁରୁ ରାଜେନ୍ଦ୍ର ପ୍ରସାଦଙ୍କ ସଦୟ ସହାୟତା ପାଇଥିଲେ ।

ଜାତୀୟବାଦୀ ଭାବଧାରାର ପ୍ରସାର କରି ନବଜାଗରଣ ଆଣିବା ପାଇଁ ରାଜେନ୍ଦ୍ର ସାପ୍ତାହିକ 'ଦେଶ' ବାହାର କରିବା ସଙ୍ଗେ ସଙ୍ଗେ 'ସର୍ଚ୍ଚ ଲାଇଟ୍' ଇଂରେଜୀ ପାକ୍ଷିକ ପତ୍ରର ସମ୍ପାଦନା ପରିଷଦରେ ମଧ୍ୟ ଯୋଗଦେଇଥିଲେ ।

ତାଙ୍କର ନିରପେକ୍ଷ ଏବଂ ନିର୍ଭୀକ ନେତୃତ୍ୱକୁ ସବୁ ଶ୍ରେଣୀର ଲୋକେ ସମର୍ଥନ କରିଥିଲେ । କଂଗ୍ରେସ ମୁଷ୍ଟିମେୟ ସୁଧୀ ମହଲଙ୍କ ପରିସରରୁ ମୁକ୍ତ ହୋଇ ସମାଜ-ସମୁଦାୟକୁ ପରିବ୍ୟାପ୍ତ ହେଲା । ଆବାଳ ବୃଦ୍ଧ-ବନିତାଙ୍କ ମୁକ୍ତି ପିପାସାର ସଙ୍ଗଠନ ରୂପେ କଂଗ୍ରେସର ଲୋକପ୍ରିୟତା ପାଇଁ ଏହି ଅନୁଷ୍ଠାନର ହଜାର ହଜାର କର୍ମୀଙ୍କୁ କାରାଦଣ୍ଡ ମିଳିଲା । ସେହି ସମୟରେ ବଡ଼ଲାଟ ଚେମସ୍‌ଫୋର୍ଡ ବିଦାୟ ନେଲେ ଏବଂ ବିଗ୍ରିରପତି ରିଡ଼ିଂ ନୂତନ ବଡ଼ଲାଟ ହୋଇ ଆସିଲେ । ରିଡ଼ିଂ ଜନଦାବୀକୁ ସହାନୁଭୂତି ନ ଦେଖାଇ ନିର୍ମମ ଭାବରେ ଆନ୍ଦୋଳନ ଦମନ କରିବାକୁ ଲାଗିଲେ । ସେତିକବେଳେ ଖିଲାଫତ୍ ଆନ୍ଦୋଳନକୁ ଆରମ୍ଭ ହୋଇଗଲା । ଧର୍ମଗୁରୁଙ୍କ ନିର୍ଦ୍ଦେଶକୁ ମୁସଲମାନମାନେ ମାନନ୍ତି । ଫତୁଆ ଜାରି ଫଳରେ ସରକାରଙ୍କ ସହିତ ମୁସଲମାନମାନେ ଆଉ କୌଣସି ପ୍ରକାର କାର୍ଯ୍ୟରେ ସହଯୋଗ କଲେ ନାହିଁ । ସେଥିପାଇଁ ଅଲି ଭ୍ରାତୃଦ୍ୱୟ ମୌଲାନା ମହମ୍ମଦ ଅଲି ଏବଂ ମୌଲାନା ସଉକତ୍ ଅଲିଙ୍କୁ ଜେଲଦଣ୍ଡ ହେଲା । କଂଗ୍ରେସ ଏହି ଖିଲାଫତ ଆନ୍ଦୋଳନକୁ ସମର୍ଥନ କଲା । ହିନ୍ଦୁ ମୁସଲମାନ ଏହି ଦୁଇ ସମ୍ପ୍ରଦାୟର ମିଳିତ ଆନ୍ଦୋଳନକୁ ଦବାଇବା ପାଇଁ ସରକାର ଅସମର୍ଥ ହେଲେ ।

ଭାରତୀୟମାନଙ୍କୁ ସାନ୍ତ୍ୱନା ଦେବା ପାଇଁ ବ୍ରିଟିଶ ସମ୍ରାଟ ଖ୍ରୀ. ୧୯୨୧ ଡ଼ିସେମ୍ବର ମାସରେ ଭାରତ ଆଗମନ କଲେ । ଗାନ୍ଧିଜୀ ସମ୍ରାଟଙ୍କର ଏହି ଗସ୍ତ ବିରୁଦ୍ଧରେ କଂଗ୍ରେସର ମତାମତ ଆଗରୁ ଜଣାଇ ଦେଇଥିଲେ । ତେଣୁ ସମ୍ରାଟଙ୍କ ଅଭ୍ୟର୍ଥନା ସଭାକୁ କେହି ନ ଯାଆନ୍ତୁ ବୋଲି କଂଗ୍ରେସ ଘୋଷଣା କଲା । ମୁଷ୍ଟିମେୟ ରାଜଭକ୍ତଙ୍କ ଛଡ଼ା କେହି ଏ ସଭାକୁ ଯାଇ ନ ଥିଲେ ଫଳରେ ରାଜଭକ୍ତ ଏବଂ ଅସହଯୋଗୀମାନଙ୍କର ସଂଘର୍ଷ ଘଟି ୧୫ ଜଣ ମଲେ ଏବଂ ଶହ ଶହ ଲୋକ ଆହତ ହେଲେ । ଏହି ଜୁଲୁମ ବିରୋଧରେ ଗାନ୍ଧିଜୀ ଅନଶନ ଆରମ୍ଭ କରିଦେଲେ । ତେଣୁ ଜନସାଧାରଣଙ୍କର ନୈତିକତା ରକ୍ଷା କରିବା ଏବଂ ସଭାସମିତିରେ ଶାନ୍ତି ଶୃଙ୍ଖଳା ରକ୍ଷାକରିବାର ଦାୟିତ୍ୱ ମୁଖ୍ୟତଃ ରାଜେନ୍ଦ୍ର ପ୍ରସାଦଙ୍କ ଉପରେ ପଡ଼ିଲା ।

ରାଜେନ୍ଦ୍ର ପ୍ରସାଦ ଗୁଜୁରାଟର ବର୍ଦ୍ଦୋଲିଠାରେ କଂଗ୍ରେସ କାର୍ଯ୍ୟକାରୀ ସମିତିରେ ଯୋଗ ଦେଇଥାନ୍ତି, ସେତିକବେଳେ ଅସହଯୋଗ ଆନ୍ଦୋଳନକୁ ଗାନ୍ଧିଜୀ ସ୍ଥଗିତ କରିଦେଲେ । କାରଣ ଉତ୍ତର ପ୍ରଦେଶରେ ନିରସ୍ତ୍ର ଜନସାଧାରଣଙ୍କୁ ପୋଲିସ୍ ଗୁଳି ମାରିଲା । ଲୋକେ ଉତ୍ତ୍ୟକ୍ତ ହୋଇ ପୋଲିସ୍ ଥାନାମାନ ପୋଡ଼ିଦେଲେ । କେତେ ପୋଲିସ୍ ମୃତ୍ୟୁମୁଖରେ ପଡ଼ିଲେ । ତେଣୁ ଦୁଃଖରେ ମ୍ରିୟମାଣ ହୋଇ ଗାନ୍ଧିଜୀ ଏପରି ପନ୍ଥା ଗ୍ରହଣ କଲେ । ସତ୍ୟାଗ୍ରହ ଓ ଅହିଂସାର ଗୁରୁତ୍ୱ ଜନସାଧାରଣ ନ ବୁଝିଲେ ଆନ୍ଦୋଳନ ବିଫଳ ହୋଇଯିବ ବୋଲି ସେ ଭାବୁଥିଲେ । ଗାନ୍ଧିଜୀଙ୍କର ଏପରି ସିଦ୍ଧାନ୍ତକୁ ପସନ୍ଦ କରି ନ ଥିଲେ ମଧ୍ୟ ରାଜେନ୍ଦ୍ର ନେତୃତ୍ୱର ନିର୍ଦ୍ଦେଶକୁ ମାନି ନେଇଥିଲେ । ଅହିଂସା ଆନ୍ଦୋଳନ ହିଂସାମାର୍ଗରେ ପରିଚାଳିତ ହୋଇ ଲକ୍ଷ୍ୟଚ୍ୟୁତ ହେବା ଅନୁଚିତ୍ । ତେଣୁ ଆନ୍ଦୋଳନକୁ ସ୍ଥଗିତ ରଖି ରଚନାତ୍ମକ କାର୍ଯ୍ୟରେ ମନୋନିବେଶ କରିବା ପାଇଁ ସ୍ଥିର ହେଲା । କଂଗ୍ରେସ ସଭ୍ୟ ସଂଖ୍ୟା ଦଶଲକ୍ଷ ହେବ, ଖଦୀ ପ୍ରସାର ହେବ, ଅଧିକ ଜାତୀୟ ବିଦ୍ୟାଳୟ ପ୍ରତିଷ୍ଠା ହେବ, ଦଳିତ ଜାତି ସଙ୍ଗଠିତ ହେବ, ସେଥିପାଇଁ ରାଜେନ୍ଦ୍ର ପ୍ରସାଦ ପ୍ରମୁଖ ନେତାମାନେ ଯୋଜନା ପ୍ରସ୍ତୁତ ଓ କାର୍ଯ୍ୟକାରୀ କରିବାରେ ଲାଗିପଡ଼ିଲେ ।

ସେତିକବେଳେ ବ୍ରିଟିଶ ସରକାର ଭାରତରେ ଜନ ଅସନ୍ତୋଷର କାରଣ ତଦାରଖ କରି କିପରି ଭାବରେ ବହୁକାଳ ଧରି ବ୍ରିଟିଶ ଶାସନ ଭାରତରେ ସୁଦୃଢ଼ ହୋଇପାରିବ; ସେ ବିଷୟରେ ଅନୁସନ୍ଧାନ କମିଟି ବସାଇଲେ । କମିଟି ରିପୋର୍ଟ ଦେଇଥିଲେ ଯେ ପରିବାରର ପରିସରରୁ କୁଳାଙ୍ଗନାମାନଙ୍କୁ ବୃତ୍ତିଲୋଭରେ ବାହାରକୁ ଆଣିବାକୁ ହେବ ଏବଂ ଜନପଥର ସର୍ବତ୍ୟାଗୀ ସାଧୁ ସନ୍ଥଙ୍କୁ ମଠବାଡ଼ି ଧରାଇଦେଇ ଦାୟିତ୍ୱ ଦିଆଯିବାର ନୀତିକୁ କୌଶଳର ସହିତ କାର୍ଯ୍ୟକାରୀ କଲେ, ଭାରତୀୟ ସମାଜ ଓ ଶାସନରେ ବ୍ରିଟିଶ ଆଧିପତ୍ୟ ନିରଙ୍କୁଶ ହୋଇ ରହିପାରିବ । ତେଣୁ ଭାରତୀୟ ଜନଗଣଙ୍କ ନବଜାଗରଣକୁ ଦମନ କରି ରଖିବା ପାଇଁ ବ୍ରିଟିଶ ଶାସନ ସର୍ବଦା ଚେଷ୍ଟା କରି ଆସିଲା । ସେହି ବର୍ଷ ଗାନ୍ଧିଜୀଙ୍କୁ ଛଅ

ବର୍ଷ କାରାଦଣ୍ଡ ମିଳଲା । ତେଣୁ ରାଜେନ୍ଦ୍ର ପ୍ରସାଦ ଅହମଦାବାଦରୁ ଫେରିବା ପରେ ରଚନାତ୍ମକ କାମରେ ଲାଗିପଡ଼ିଲେ ।

ଗାନ୍ଧିଜୀଙ୍କର ଏହି ନୀରବ ତଥା ବିପ୍ଳବର ମାର୍ଗକୁ ପଣ୍ଡିତ ମୋତିଲାଲ ଦେଶବନ୍ଧୁ ଚିତ୍ତରଞ୍ଜନ ଏବଂ ମହାରାଷ୍ଟ୍ରର ବହୁ ନେତା ପସନ୍ଦ କରୁ ନ ଥିଲେ । ବହୁ ନେତାଙ୍କର ମଧ୍ୟ ଗାନ୍ଧିଜୀଙ୍କ ନେତୃତ୍ୱ ଉପରେ ବିଶ୍ୱାସ ନ ଥିଲା । ସେହି ବର୍ଷ 'ଖିଲାଫତ ଆନ୍ଦୋଳନ' ବନ୍ଦ ହୋଇଗଲା । ମୁସଲମାନ ନେତାମାନେ ଆଉ ହିନ୍ଦୁ ନେତାମାନଙ୍କ ସହିତ ବିଦେଶୀ ସରକାରକୁ ବିରୋଧ କଲେ ନାହିଁ । ପୁନଶ୍ଚ ହିନ୍ଦୁ ମୁସଲମାନ ସାମ୍ପ୍ରଦାୟିକ ଗଣ୍ଡଗୋଳ ଦେଖାଗଲା । ତେଣେ ନାଗପୁରରେ ଦେଶପ୍ରେମୀ ଅବିବାହିତ ମରାଠୀ ଡାକ୍ତର ହେଡ଼ଗେଓ୍ୱାର ହିନ୍ଦୁ ସମାଜର ସୁରକ୍ଷା ପାଇଁ 'ରାଷ୍ଟ୍ରୀୟ ସ୍ୱୟଂ ସେବକ ସଂଘ' ଗଠନ କଲେ ।

୧୯୨୪ ମସିହାରେ ରାଜେନ୍ଦ୍ର ପ୍ରସାଦ କାରାଦଣ୍ଡିତ ଗାନ୍ଧିଜୀଙ୍କୁ ପୁନା ଡାକ୍ତରଖାନାରେ ସାକ୍ଷାତ କଲେ । ସେଠାରେ ଗାନ୍ଧିଜୀଙ୍କର ତଳପେଟରେ ଅପରେସନ୍ ହୋଇଥାଏ । ସ୍ୱାସ୍ଥ୍ୟ କାରଣରୁ କାରାମୁକ୍ତ ହୋଇ ଗାନ୍ଧିଜୀ ପୁଣି 'ୟଙ୍ଗ୍ ଇଣ୍ଡିଆ' ପତ୍ରିକାର ଦାୟିତ୍ୱ ନେଲେ । ସାମ୍ପ୍ରଦାୟିକ ସଦ୍‌ଭାବ ପ୍ରତିଷ୍ଠା ପାଇଁ ସେ ୨୧ ଦିନଆ ଆତ୍ମଶୁଦ୍ଧି ଅନଶନ ଆରମ୍ଭ କଲେ । ନବଗଠିତ ହିନ୍ଦୁ ମହାସଭାର ପ୍ରଥମ ଗୟା ଅଧିବେଶନରେ ମହାମନା ମାଲବ୍ୟ ସଭାପତି ନିର୍ବାଚିତ ହେଲେ । ସ୍ୱାଗତ କମିଟିର ସଭାପତି ହୋଇଥିଲେ ରାଜେନ୍ଦ୍ର ପ୍ରସାଦ । ଏହାପରେ ରାଜନୈତିକ ପରିବେଶରେ ସନ୍ଦେହ ଓ ନୈରାଶ୍ୟ ଦେଖାଗଲା । ସରକାର ନେତୃମହଲରେ ପରସ୍ପର ଭିତରେ ମନୋମାଳିନ୍ୟ ସୃଷ୍ଟି ପାଇଁ କାର୍ଯ୍ୟରତ ହେଲେ ଓ ଗୃହଶିଳ୍ପର ଲୋଭ ଦେଖାଇ ବହୁ ଦକ୍ଷ କର୍ମୀଙ୍କୁ ତାଙ୍କର ହାତ କରିନେଲେ । ପ୍ରଗତିବାଦୀ କେତେକ କର୍ମୀ ଗାନ୍ଧିଜୀଙ୍କ ମନ୍ଥର ନୀତିରେ ଅସନ୍ତୁଷ୍ଟ ଥିଲେ । ଆହୁରି ଅନେକେ ନିର୍ବାଚନ କରିଆରେ ପ୍ରତିନିଧି ସଭାକୁ ଯାଇ ଶାସନ କଳର ସହଯୋଗ ନେବା ପାଇଁ ଲାଳାୟିତ ହେଲେ । ଗୟା କଂଗ୍ରେସର ସଭାପତି ଦେଶବନ୍ଧୁ ଚିତ୍ତରଞ୍ଜନ କଂଗ୍ରେସର ସମଦାୟ କାର୍ଯ୍ୟକ୍ରମ ପାଇଁ ଯୋଜନା

ଆଗତ କର ବଫଳ ହେଲେ । ସେ କଂଗ୍ରେସରୁ ଇସ୍ତଫା ଦେଇ 'ସ୍ୱରାଜ' ଦଳ ଗଠନକଲେ । ରାଜାଜୀ, ପଟେଲ, ଜବାହରଲାଲଙ୍କ ସହିତ ରାଜେନ୍ଦ୍ର ପ୍ରସାଦ ଗାନ୍ଧିଜୀଙ୍କୁ ସମର୍ଥନ କଲେ । ସେମାନେ ସରକାରୀ ପ୍ରଲୋଭନରେ ଭୁଲି ନ ଥିଲେ; କିନ୍ତୁ ଦେଶବନ୍ଧୁ ଚିତ୍ତରଞ୍ଜନ, ମୋତିଲାଲ ନେହେରୁ ପ୍ରମୁଖ ସ୍ୱରାଜଦଳ ତରଫରୁ ନିର୍ବାଚନ ଲଢିବାର ସିଦ୍ଧାନ୍ତ କଲେ । ଶେଷକୁ କଂଗ୍ରେସର ଦୁଇ ଗୋଷ୍ଠୀ ସୁଧାରବାଦୀ ଏବଂ ଉଗ୍ରବାଦୀଙ୍କ ଭିତରେ ମିଳାମିଶା ହୋଇ ଖ୍ରୀ. ୧୯୨୩ କାକିନାଡ଼ା ଅଧିବେଶନରେ ପ୍ରସ୍ତାବ ଗ୍ରହଣ କରାଗଲା । ସ୍ୱରାଜ ଦଳ ନିର୍ବାଚନରେ ଲଢ଼ି କେନ୍ଦ୍ର ବ୍ୟବସ୍ଥାପକ ସଭାରେ ୪୫ଟି ସ୍ଥାନ ଲାଭ କରି ବିରୋଧୀଦଳ ଗଠନ କଲେ । ଏହି ଦଳର ସଂସଦୀୟ ନେତା ମୋତିଲାଲ ଏବଂ ଉପନେତା ପଣ୍ଡିତ ନୀଳକଣ୍ଠ ହେଲେ । ୧୯୨୪ ମସିହା ବେଲଗାଓଁ କଂଗ୍ରେସରେ ଗାନ୍ଧିଜୀ ସଭାପତି ହୋଇଥିଲେ । ସେ ସ୍ୱରାଜ ଦଳକୁ ସମାଲୋଚନା ନ କରି ବରଂ ରଚନାତ୍ମକ କାର୍ଯ୍ୟ ପାଇଁ ତାଙ୍କୁ ଆହ୍ୱାନ ଜଣାଇଥିଲେ । ରାଜେନ୍ଦ୍ର ପ୍ରସାଦ ବାସ୍ତବ ଗାନ୍ଧିବାଦୀ ରୂପେ ଦଳୀୟ କନ୍ଦଳରୁ ଦୂରରେ ରହି ରଚନାତ୍ମକ କର୍ମୀ ହିସାବରେ ଅଶିକ୍ଷା, ଅନାଟନ ବିରୁଦ୍ଧରେ ସଂଗ୍ରାମ ଜାରି ରଖିଥିଲେ । ଦଳୀୟ ସଙ୍ଗଠନରୁ ଦୂରେଇ ଯାଇ ସରକାରୀ ଅମଲାଙ୍କ ଗହଣରେ ଜନପ୍ରତିନିଧି ହେଲେ ଏହି ସମସ୍ୟାର ସମାଧାନ କରିହେବ ନାହିଁ ସେ ଭାବୁଥିଲେ । ତେଣୁ ଖଦୀ ଓ ଜାତୀୟ ଶିକ୍ଷାର ପ୍ରସାର ପାଇଁ ସେ ରାଜାଜୀଙ୍କ ସହିତ ସାରା ଭାରତ ବୁଲି ୧୬ ଲକ୍ଷ ଟଙ୍କା ଚାନ୍ଦା ଆଦାୟ କରିଥିଲେ । ସର୍ବାଧିକ ଅଫିମସେବୀ ଆସାମରେ ସେ ନିଶାନିବାରଣ ଆନ୍ଦୋଳନ ଚଳାଇଥିଲେ । ବିହାରର ସାନ୍ତାଲ ପ୍ରଗଣାରେ ଅସ୍ପୃଶ୍ୟତା ନିବାରଣ ପାଇଁ ସଙ୍ଗଠିତ ଉଦ୍ୟମ କରିଥିଲେ ।

ଇତିମଧ୍ୟରେ ସ୍ଥାନୀୟ ସ୍ୱାୟତ୍ତ ଶାସନ ସଂସ୍ଥାରେ ଭାଗନେବା ପାଇଁ କଂଗ୍ରେସ ନିଷ୍ପତ୍ତି କଲା । କଂଗ୍ରେସ କର୍ମୀମାନେ ଦେଶର ବିଭିନ୍ନ ପୌର ସଂସ୍ଥାମାନଙ୍କରେ ପ୍ରତିନିଧି ହେବା ପାଇଁ ନିର୍ବାଚିତ ହେଲେ । ପଟେଲ ଅହମଦାବାଦ, ଜବାହରଲାଲ ଏଲ୍ଲାବାଦ ଏବଂ ରାଜେନ୍ଦ୍ର ପ୍ରସାଦ ପାଟନା ପୌରସଭାର ପୌରପାଳ ହେଲେ । ରାଜେନ୍ଦ୍ର ପ୍ରସାଦ ତାଙ୍କ କାର୍ଯ୍ୟକାଳ

ଭିତରେ ସଡ଼କ ରାସ୍ତାର ଉନ୍ନତ, ଦୁଗ୍ଧ ଯୋଗାଣ, ପ୍ରାଥମିକ ଶିକ୍ଷା, ପାନୀୟଜଳ ଯୋଗାଣ, ମଇଳା ପାଣି ନିଷ୍କାସନ ପ୍ରଭୃତି ଦକ୍ଷତାର ସହିତ କାର୍ଯ୍ୟ କରିଥିଲେ । ଏହାଛଡ଼ା ସେ ମେହେନ୍ତର, ଝାଡ଼ୁଦାରମାନଙ୍କ ପାଇଁ ସ୍ୱତନ୍ତ୍ର ବସ୍ତି ନିର୍ମାଣ କରାଇଥିଲେ । ଏହିପରି କାର୍ଯ୍ୟପାଇଁ ପୌରସଭାର ସମ୍ବଳ ନ ଥିବାରୁ ସେ ସହରବାସୀଙ୍କଠାରୁ ଦାନ ସଂଗ୍ରହ କରିଥିଲେ । ଟିକସ ବୃଦ୍ଧି ପାଇଁ ସରକାର ଅନୁମତି ଦେଉ ନ ଥିବାରୁ ସେ ଏହି ପନ୍ଥାର ଆଶ୍ରୟ ନେଇ ସଫଳତା ଅର୍ଜନ କରିଥିଲେ । ଖ୍ରୀ. ୧୯୨୬ରେ 'ଜାତୀୟବାଦୀ ଦଳ' କେନ୍ଦ୍ର ବ୍ୟବସ୍ଥା ସଭାରେ ବହୁ ଆସନ ଅଧିକାର କଲେ । ଲାଲଜୀ ଏହି ଏହି ଦଳର ନେତୃତ୍ୱ ନେଇଥିଲେ । ସ୍ୱରାଜ ପାର୍ଟି କ୍ରମେ ଦୁର୍ବଳ ହୋଇ-ପଡ଼ିଲା । ଏଣେ ସାମ୍ପ୍ରଦାୟିକ ତିକ୍ତତା ବଢ଼ି ଉଠିଲା । ଗୋହତ୍ୟା ନିରୋଧ ଓ ମସ୍‌ଜିଦ୍ ଆଗରେ ହିନ୍ଦୁ ଶୋଭାଯାତ୍ରାର ବାଜା ବଜେଇ ଯିବାକୁ ଆଳକରି ଏହି ତିକ୍ତତା ବୃଦ୍ଧି ପାଇଲା । ସରକାର ଏହି ତିକ୍ତତା ବୃଦ୍ଧିକୁ ଉତ୍ସାହିତ କରିଥିଲେ । ଲିଗ୍ ଓ କଂଗ୍ରେସ ନେତାମାନଙ୍କର ମିଳିତ ଆବେଦନକୁ ଖ୍ରୀ. ୧୯୧୭ରେ ବଡ଼ଲାଟ ମଣ୍ଟେଗୁ ସ୍ୱୀକାର କଲେ ମଧ୍ୟ କାର୍ଯ୍ୟକାରୀ ହୋଇ-ପାରିଲା ନାହିଁ । ଅସହଯୋଗ ଆନ୍ଦୋଳନକୁ ବିରୋଧ କରି ଜାତୀୟବାଦୀ ନେତା ଜିନ୍ନା ୧୯୨୦ ମସିହାରେ କଂଗ୍ରେସରୁ ଅଲଗା ହୋଇଯାଇ ସାମ୍ପ୍ରଦାୟିକ ମୁସ୍‌ଲିମ୍ ଲିଗ୍‌ର ନେତା ହେଲେ ।

ଏହି ପରିବେଶରେ ବର୍ଦ୍ଦୋଲିର ଗୃହୀମାନେ ଶତକଡ଼ା ବାଇଶି ଅଧିକା ଧାର୍ଯ୍ୟ ଟିକସ ବିରୁଦ୍ଧରେ ସଂଗଠିତ ହେଲେ । ସର୍ଦ୍ଦାର ପଟେଲଙ୍କ ଅବିସ୍ମରଣୀୟ ନେତୃତ୍ୱ ନିକଟରେ ସରକାର ହାର ମାନିଲେ । ରାଜେନ୍ଦ୍ର ପ୍ରସାଦ ନିରଳସ ଭାବରେ ଜାତୀୟ ଶିକ୍ଷାରେ ଦେଶାତ୍ମବୋଧ ବିଚାରଧାରାର ପ୍ରସାର ପାଇଁ ମନପ୍ରାଣ ଦେଇ ଲାଗିପଡ଼ିଥାନ୍ତି । କ୍ରମେ ଜନତାଠାରୁ ଶ୍ରଦ୍ଧା ଓ ସହାନୁଭୂତି କମି ଆସିଲା । ଫଳରେ ଜାତୀୟ ବିଶ୍ୱବିଦ୍ୟାଳୟ କାର୍ଯ୍ୟକ୍ରମକୁ ସୀମିତ କରିଦିଆଗଲା । ବହୁ ସ୍କୁଲ ବନ୍ଦ ହୋଇଗଲା । ଛାତ୍ରମାନଙ୍କୁ ମୁକ୍ତି ଆନ୍ଦୋଳନରେ ଯୋଗଦାନ କରାଗଲା । ରାଜେନ୍ଦ୍ର ପ୍ରସାଦ ରଚନାତ୍ମକ କାର୍ଯ୍ୟକ୍ରମରେ ଲୋକଶକ୍ତିକୁ ଉପଯୋଗ କରିବାକୁ ଲାଗିପଡ଼ିଲେ ।

ଏହି ନିଷ୍ପ୍ରିୟ ଲୋକଶକ୍ତି ଯୋଜନାବଳି ଭାବରେ ସକ୍ରିୟ ହେଲେ 'ଗରିବୀ ହଟିଯିବ' ବୋଲି ସେ ବିଶ୍ୱାସ କରୁଥିଲେ । ସରଳ ଜୀବନ-ଯାପନ ହିଁ ଗାନ୍ଧୀ-ନୀତର ବିଶ୍ୱାସ । ତେଣୁ ସେ ତନ୍ତଶିଳ୍ପର ବିକାଶ ପାଇଁ ଲାଗିପଡ଼ିଲେ । ଭାରତ ପରି ଜନବହୁଳ ଦେଶରେ ଭାରି ଶିଳ୍ପ ପରିବର୍ତ୍ତେ ବିକେନ୍ଦ୍ରିତ କୁଟୀରଶିଳ୍ପ ସାଧାରଣ ମଣିଷର ସର୍ବନିମ୍ନ ଅର୍ଥନୈତିକ ସ୍ଥିତି ପାଇଁ ପ୍ରୟୋଜନ । ସେଥିପାଇଁ ସେ 'ତିଲକ ସ୍ୱରାଜ ପାଣ୍ଠି'ରୁ ଅର୍ଥ ସାହାଯ୍ୟ ପାଉଥିଲେ । ଖ୍ରୀ. ୧୯୨୫ରେ ଗଠିତ ନିଖିଳ ଭାରତ ଚରଖା ସଂଘର ସେ ଏଜେଣ୍ଟ ହୋଇଥିଲେ । ଖଦୀ-ଶିକ୍ଷକଙ୍କୁ ତାଲିମ ଦେଇ ବିକ୍ରୀକେନ୍ଦ୍ର ଓ ପ୍ରଦର୍ଶନୀ ଜରିଆରେ ଖଦୀକୁ ଲୋକପ୍ରିୟ କରିବାପାଇଁ ସେ ଲାଗିପଡ଼ିଥିଲେ । ବିହାର-ଓଡ଼ିଶା ଛଡ଼ା ସେ ଆନ୍ଧ୍ର ଓ ଆସାମରେ ଖଦୀ-ଉଦ୍ୟୋଗକୁ ସଂଗଠିତ କରିଥିଲେ । ଅନୁଭୂତିସର୍ବସ୍ୱ ଜ୍ଞାନକୁ ନେଇ ସେ ଖଦୀ ଅର୍ଥନୀତି ବିଷୟରେ ଭାଷଣମାନ ଏକତ୍ର କରି ପ୍ରକାଶ ମଧ୍ୟ କରିଥିଲେ ।

ମିଷ୍ଟଭାଷୀ ବନ୍ଧୁବତ୍ସଳ ରାଜେନ୍ଦ୍ର ପ୍ରସାଦ ଥରେ ଏକ ମକଦ୍ଦମା ସଂକ୍ରାନ୍ତରେ ଲଣ୍ଡନ ଯାଇଥିଲେ । ସେ ସେଠାରେ ମାସେ ରହିଥିଲେ । ସେଠାରେ ସେ ବିଲାତର ରାଜନୈତିକ କାର୍ଯ୍ୟକଳାପ ଅଧ୍ୟୟନ କରିଥିଲେ । ଗାନ୍ଧିଜୀଙ୍କ ପ୍ରିୟବନ୍ଧୁ ଷ୍ଟାଣ୍ଡୋନାଥଙ୍କ ଯୁଦ୍ଧବିରୋଧୀ ସଭାରେ ସେ ଯୋଗ ଦେଇଥିଲେ । ସେ ରୋମାରୋଲାଁଙ୍କ ସହ ଭାରତୀୟ ମୁକ୍ତି ଆନ୍ଦୋଳନର ସମସ୍ୟା ସମ୍ପର୍କରେ ଆଲୋଚନା କରିଥିଲେ । ହଲାଣ୍ଡ ଯୁଦ୍ଧ ବିରୋଧୀ ଯୁବସମ୍ମେଳନରେ ସେ ଯୋଗ ଦେଇ ଭାରତ ଫେରିଥିଲେ । ଅବଶ୍ୟ ବିଦେଶଯାତ୍ରା ବେଳରେ ସେ ବିଦେଶୀ ପୋଷାକ ପିନ୍ଧିଥିଲେ । ଚିର ନିରାମିଷାଶୀ ରାଜେନ୍ଦ୍ର ପ୍ରସାଦ ଖାଦ୍ୟପାନରେ ହଇରାଣ ହୋଇଥିଲେ । ପାଠାଗାରକୁ ଯାଇ ଆଇନ ବହି ପଢ଼ି, ଓକିଲମାନଙ୍କ ସହ ପରାମର୍ଶ କରି ସେ ପନ୍ଦର ହଜାର ପୃଷ୍ଠାର ନଥି ତିଆରି କରି ଆଲୋଡ଼ନ ସୃଷ୍ଟି କରିଥିଲେ । ସେହି ନଥି ତିଆରିରୁ ତାଙ୍କର ଆଇନ ଜ୍ଞାନର ଗଭୀରତା ଜଣାପଡ଼େ । ବ୍ରିଟିଶ ସାମ୍ରାଜ୍ୟର ସର୍ବଶେଷ ବିଚାରମଞ୍ଚ 'ପ୍ରିଭିକାଉନ୍‌ସିଲ'ରେ ଚାଲୁଥିବା ବନ୍ଧୁ ହରି ପ୍ରସାଦ ସିହ୍ନାଙ୍କ ବିରୁଦ୍ଧରେ ଉକ୍ତ ମକଦ୍ଦମା ମିଳାମିଶା ମୂଳରେ ଫଇସଲ ହୋଇଗଲା ।

ସରକାର ଖ୍ରୀ. ୧୯୨୭ରେ ସାଇମନ କମିଶନ ନିଯୁକ୍ତ କରି ଭାରତକୁ ପଠାଇଲେ । ଭାରତର ରାଜନୈତିକ ପରିସ୍ଥିତି ବିଚାର କରି ଆବଶ୍ୟକ ସଂସ୍କାର ପାଇଁ ସୁପାରିଶ କରିବା ଲାଗି କମିଶନ ନିଯୁକ୍ତ ହୋଇଥିଲା । ଉକ୍ତ କମିଶନରେ କେବଳ ଗୋରାସଭ୍ୟ ଥିବାରୁ କଂଗ୍ରେସ ତାର ବିରୋଧ କରିଥିଲା । ଭାରତୀୟମାନେ ସ୍ୱାଧୀନତା ଲାଭ କରିବା ପାଇଁ ଯୋଗ୍ୟ ହେଲେଣି କି ନାହିଁ ସେ ବିଷୟ କମିଶନ ତଦାରଖ କରିବେ ବୋଲି ସରକାରୀ ଘୋଷଣା ପ୍ରକାଶ ପାଇଲା । ଏହି ଅପମାନକୁ ବରଦାସ୍ତ ନ କରି କମିଶନକୁ ବର୍ଜନ କରିବା ପାଇଁ ନେତାମାନେ ଆହ୍ୱାନ ଦେଲେ । ସାଇମନ୍ କମିଶନ ଫେବୃୟାରୀ ୧୯୨୮ରେ ଭାରତକୁ ଆସିଲେ । କମିଶନ୍ ବିରୋଧୀ ଶୋଭାଯାତ୍ରାରେ ପୋଲିସ ଲାଠି ଗୁଳି ଚଳାଇଲେ । ଏଥିରେ ବହୁ କର୍ମୀ ଆହତ ହେଲେ । ଲାହୋରରେ କମିଶନ ବିରୋଧୀ ଜନବିକ୍ଷୋଭର ନେତୃତ୍ୱ ନେଉଥିବା ବେଳେ ଲାଲା ଲଜପତ୍ ପୋଲିସ୍ ଗୁଳିରେ ଆହତ ହୋଇ ପରେ ମୃତ୍ୟୁମୁଖରେ ପଡ଼ିଲେ । ରାଜେନ୍ଦ୍ର ପ୍ରସାଦଙ୍କ ନେତୃତ୍ୱରେ ପାଟନା ଜନବିକ୍ଷୋଭ 'ସାଇମନ୍ ଫେରିଯାଅ'ର ଦୃଢ଼ ଧ୍ୱନି ଦେଇଥିଲେ ।

୧୯୨୮ ମସିହା ମେ ମାସରେ ସବୁଦଳର ରାଜନୀତିଜ୍ଞମାନଙ୍କର ସମ୍ମିଳନୀରେ ଭାରତ ପାଇଁ ସମ୍ବିଧାନ ପ୍ରଣୟନ ବିଷୟରେ ଆଲୋଚନା କରାଯାଇଥିଲା । ସେଥିପାଇଁ ପଣ୍ଡିତ ମୋତିଲାଲଙ୍କୁ ସମ୍ବିଧାନର ଚଟା ପ୍ରସ୍ତୁତ କରିବାର ଦାୟିତ୍ୱ ଦିଆଯାଇଥିଲା । ଦାର୍ଶନିକ ଭଗବାନ ଦାସ ଖ୍ରୀ. ୧୯୨୩ରୁ ସ୍ୱରାଜ ଦଳର ଅନ୍ୟତମ ନେତା ହିସାବରେ ଏକ ସମ୍ବିଧାନ ତିଆରି କରିଥିଲେ । ମୁଖ୍ୟତଃ ସଂସଦୀୟ ରାଜନୀତି ପାଇଁ ସ୍ୱରାଜ ଦଳର ଚିନ୍ତାଧାରା ଏହି ସମ୍ବିଧାନରେ ପ୍ରତିଫଳିତ ହୋଇଥିଲା । କଂଗ୍ରେସର ଯୁବକନେତା ଜବାହରଲାଲ, ନେତାଜୀ ସୁଭାଷ, ରାଜେନ୍ଦ୍ର ପ୍ରସାଦ ପ୍ରଭୃତି ଉକ୍ତ ସମ୍ବିଧାନର ଦୃଢ଼ ବିରୋଧ କରିଥିଲେ । ପରବର୍ତ୍ତୀ କଲିକତା କଂଗ୍ରେସରେ ଏଥିପାଇଁ ବହୁ ବିତର୍କ ଚାଲିଥିଲା । ଔପନିବେଶିକ ମର୍ଯ୍ୟାଦା ସମ୍ବଳିତ ସ୍ୱାଧୀନତା ପାଇଁ ଶେଷରେ କଂଗ୍ରେସ ନିଷ୍ପତ୍ତି ଗ୍ରହଣ କଲା । ଏହି ସିଦ୍ଧାନ୍ତକୁ ପୂର୍ଣ୍ଣ ସ୍ୱାଧୀନତା ଲାଭର ଉଷାକାଳ ବୋଲି ରାଜେନ୍ଦ୍ର ପ୍ରସାଦ କହୁଥିଲେ । ୧୯୨୯ ମସିହାର

ଅଧିବେଶନ ଭାରତୀୟ ମୁକ୍ତି ସଂଗ୍ରାମର ଇତିହାସରେ ଗୁରୁତ୍ୱ ଦୃଷ୍ଟିରୁ ସ୍ମରଣୀୟ ।

ପ୍ରଥମ ବିଶ୍ୱଯୁଦ୍ଧୋତ୍ତର ଦରଦାମ ବୃଦ୍ଧି ସେ ପର୍ଯ୍ୟନ୍ତ ଆୟତ୍ତାଧୀନ ହୋଇ ନ ଥାଏ । କୃଷିଦ୍ରବ୍ୟର ମୂଲ୍ୟ କମିଯିବାରୁ ଚାଷୀକୂଳ ଦୁର୍ଗତିରେ ଥାଆନ୍ତି । ମୁକ୍ତି ଆନ୍ଦୋଳନକୁ ଦମନ କରିବା ଆଳରେ ପୋଲିସ୍‌ର ଅତ୍ୟାଚାର ଅମାନୁଷିକ ହେଉଥାଏ । ଅବସ୍ଥା ଏପରି ଅସମ୍ଭାଳ ହେଲା ଯେ ଜେଲବନ୍ଦୀ ରାଜନୀତିଜ୍ଞ ଯତୀନ୍ଦ୍ରନାଥ ଜେଲ ଭିତରେ ଅନଶନ କଲେ । ୬୧ ଦିନ ଅନଶନ ପରେ ତାଙ୍କର ଅବସ୍ଥା ସଙ୍କଟାପନ୍ନ ହେଲା । ଜନତା ପ୍ରତିକାର ଦାବୀ କଲେ ମଧ୍ୟ ସରକାର ନୀରବ ରହିଲେ । ଇର୍‌ଉଇନ୍ ସେତେବେଳେ ବଡ଼ଲାଟ ଥିଲେ । ଇଂଲଣ୍ଡର ତତ୍କାଳୀନ ଶ୍ରମିକ ମନ୍ତ୍ରିମଣ୍ଡଳଙ୍କ ସହିତ ଏ ବିଷୟରେ ପରାମର୍ଶ କରିବାକୁ ସେ ବିଲାତ ଗଲେ । ବ୍ରିଟିଶ ସରକାରଙ୍କ ତରଫରୁ ବଡ଼ଲାଟ ଭାରତୀୟ ନେତାମାନଙ୍କୁ ଭାରତୀୟ ସମସ୍ୟାର ସମାଧାନ ପାଇଁ ଲଣ୍ଡନରେ ହେଉଥିବା ପ୍ରଥମ ଗୋଲଟେବୁଲ ବୈଠକକୁ ନିମନ୍ତ୍ରଣ କଲେ । ସେଥିପାଇଁ ଦିଲ୍ଲୀରେ ସର୍ବଦଳୀୟ ରାଜନୀତିକ ସମ୍ମିଳନୀରେ ସିଦ୍ଧାନ୍ତ ହେଲା ଯେ 'ଔପନିବେଶିକ ସ୍ୱାଧୀନତା'କୁ ଭିତ୍ତି କରି ଆଲୋଚନା ଚାଲିବ । ଜାତୀୟ କଂଗ୍ରେସ ସଂଖ୍ୟାଲଘୁ ସମ୍ପ୍ରଦାୟର ପ୍ରତିନିଧିତ୍ୱ ମଧ୍ୟ କଲା । ବ୍ରହ୍ମଦେଶର ଚାଷୀ ଓ ଜମି ମାଲିକମାନଙ୍କ ମଧ୍ୟରେ ଥିବା ଅସନ୍ତୋଷର ସମାଧାନ ପାଇଁ ରାଜେନ୍ଦ୍ର ପ୍ରସାଦ ସେତେବେଳେ ବ୍ରହ୍ମଦେଶରେ ଥିଲେ । ସଫଳ ସମାଧାନ ପରେ ସେ ଭାରତକୁ ଫେରି ଶ୍ୱାସରୋଗରେ ଆକ୍ରାନ୍ତ ହେଲେ । ସେ ସର୍ବଦଳୀୟ ସମ୍ମିଳନୀର ନିଷ୍ପତ୍ତିକୁ ପୂରାପୂରି ମାନି ନେଇଥିଲେ ।

ଔପନିବେଶିକ ସ୍ୱାଧୀନତା ନ ମିଳିଲେ ପୂର୍ଣ୍ଣ ସ୍ୱାଧୀନତା ଦାବୀ କରି କଂଗ୍ରେସ ମୁକ୍ତି ଆନ୍ଦୋଳନ ଚଳାଇବ ବୋଲି ମତାମତ ଆଗରୁ ପ୍ରକାଶ ପାଇଥିଲା । ସେହି ସମୟ ସୀମା ଆଗରୁ ଲାହୋର କଂଗ୍ରେସରେ ଗୋଲ-ଟେବୁଲ ବୈଠକ ବିଷୟ ଆଲୋଚନା ହେବାର କଥା ଥିଲା । ଉକ୍ତ କଂଗ୍ରେସ ଅଧିବେଶନ ପୂର୍ବରୁ ଗାନ୍ଧିଜୀ ଓ ପଣ୍ଡିତ ମୋତିଲାଲ ବଡ଼ଲାଟଙ୍କୁ ଦେଖା

କରିଥିଲେ । ଗୋଲଟେବୁଲ ବୈଠକର ଅସଲ ଉଦ୍ଦେଶ୍ୟ ଏବଂ ଏହା ମୁକ୍ତି ଆନ୍ଦୋଳନର କି ଦାବୀ ଗ୍ରହଣ କରିପାରେ, ସେ ବିଷୟ ଜାଣିବା ପାଇଁ ଏହି ଦୁଇ ନେତା ଗୃହୁଁ ଥିଲେ । ପରେ ଲାହୋର କଂଗ୍ରେସରେ ଏହି ସାକ୍ଷାତକାରକୁ ଅଭିସନ୍ଧିମୂଳକ ବୋଲି ସମାଲୋଚନା ପ୍ରକାଶ ପାଇଲା । ଗୋଲଟେବୁଲ ବୈଠକରେ ଯୋଗ ନ ଦେଇ ପୂର୍ଣ୍ଣ ସ୍ୱରାଜ ପାଇଁ ଖଜଣା ନ ଦେଇ ଆଇନ ଅମାନ୍ୟ ଆନ୍ଦୋଳନ କରିବାର ମସୃଧା ହେଲା । ଏକାଦଶ ଧାରା ସମ୍ବଳିତ ଏକ ଦାବୀପତ୍ର ମାତୃଭୂମିର ମୁକ୍ତି ପାଇଁ ୧୯୩୦ ମସିହା ଜାନୁଆରୀ ୩୧ ତାରିଖରେ କଂଗ୍ରେସ ସରକାରଙ୍କୁ ଦେଲେ । ଲୁଣ କର ବନ୍ଦ କରିବା ସେହି ଦାବୀପତ୍ରର ଅନ୍ୟତମ ଦାବୀ ଥିଲା । ସରକାର ସବୁ ଦାବୀ ପ୍ରତ୍ୟାଖ୍ୟାନ କରିଦେଲେ ।

ତହୁଁ ଗାନ୍ଧିଜୀ ଲବଣ ସତ୍ୟାଗ୍ରହ ଆରମ୍ଭ କଲେ । ଉପକୂଳବର୍ତ୍ତୀ ଜନଗଣଙ୍କ ଦ୍ୱାରା ଲବଣ ଆଇନ ଅମାନ୍ୟରେ ଅନ୍ୟ ଅଞ୍ଚଳର ଲୋକେ ପ୍ରଭାବିତ ହେବେ ନାହିଁ । ଶିକ୍ଷିତ ଲୋକେ ସହଯୋଗ କରିବେ ନାହିଁ । ତେଣୁ ଲବଣକର ପରିବର୍ତ୍ତେ ଚୌକିଦାରୀ ଟିକସ ବିରୁଦ୍ଧରେ ଆନ୍ଦୋଳନ ହେଉ ବୋଲି ରାଜେନ୍ଦ୍ର ପ୍ରସାଦ ଗୃହୁଁ ଥିଲେ । ସର୍ବସାଧାରଣଙ୍କ ସମର୍ଥନ ଲାଭ ପାଇଁ ତାଙ୍କର ଏ ଭିନ୍ନ ମତକୁ ଗାନ୍ଧିଜୀ ଗ୍ରହଣ କରି ନ ଥିଲେ । ସାଙ୍କେତିକ ଭାବରେ ଲବଣ ଆଇନ ଅମାନ୍ୟ ଦ୍ୱାରା ଉତ୍ସାହ ଓ ଉଦ୍ଦୀପନା ଜନଗଣଙ୍କ ମଧ୍ୟରେ ସୃଷ୍ଟି ହୋଇଗଲେ ଅନ୍ୟାନ୍ୟ ଆଇନକୁ ଅସ୍ୱୀକାର କରି ମୁକ୍ତି ଆନ୍ଦୋଳନକୁ ତ୍ୱରାନ୍ୱିତ କରିବା ସହଜସାଧ୍ୟ; ନେତାଙ୍କର ଏହି ଜନଶ୍ରୁତିକୁ ବିନା ଦ୍ୱିଧାରେ ରାଜେନ୍ଦ୍ର ପ୍ରସାଦ ମାନି ନେଲେ । ନେତାଙ୍କର ଅନୁଭୂତି, ରାଜନୈତିକ କୌଶଳ ଓ ନେତୃତ୍ୱ ଉପରେ ତାଙ୍କର ଅଗାଧ ବିଶ୍ୱାସ ଥିଲା ।

୧୯୩୦ ମସିହା ମାର୍ଚ୍ଚ ୨ ତାରିଖରେ ଗାନ୍ଧିଜୀ ବଡ଼ଲାଟଙ୍କୁ ଲବଣ ଟିକସ ଅବିଲମ୍ବେ ଉଠାଇ ଦେବାକୁ ଅନୁରୋଧ କଲେ । ନଚେତ୍ ସେ ମାର୍ଚ୍ଚ ୧୧ ତାରିଖଠାରୁ ଆଇନକୁ ମାନିବେ ନାହିଁ ବୋଲି କହିଲେ । ସରକାର ଏ ବିଷୟରେ ନୀରବ ରହିଲେ । ତେଣୁ ମାତ୍ର ୭୮ ଜଣ

ସହଯୋଗୀଙ୍କ ଗହଣରେ ଅହମଦବାଦ ନଗରୀର ଉପକଣ୍ଠରେ ଥିବା ସାବରମତୀ ଆଶ୍ରମରୁ ଅହିଂସାର ମହାମୁନି ମୋହନ ଦାସ କରମଚାନ୍ଦ ଗାନ୍ଧୀ ୨୪୧ ମାଇଲ ଦୂରସ୍ଥ ଡାଣ୍ଡି ବେଳାଭୂମିକୁ ଲବଣ ଆଇନ ଅମାନ୍ୟ କରିବା ପାଇଁ ପଦଯାତ୍ରା ଆରମ୍ଭ କଲେ । ଏହି ଐତିହାସିକ ପଦଯାତ୍ରାକୁ ଭାରତର ବିଭିନ୍ନ ଅଞ୍ଚଳରେ ସ୍ୱାଗତ କରାଯାଇ ଫଳାଫଳକୁ ଉଦ୍‌ବେଗର ସହିତ ସମସ୍ତେ ଲକ୍ଷ୍ୟ ରଖିଥିଲେ । ଯାତ୍ରାପଥରେ ଗାନ୍ଧିଜୀଙ୍କୁ ହଜାର ହଜାର ଲୋକ ଅଭିନନ୍ଦନ ଜଣାଉଥାନ୍ତି । ମୁକ୍ତି ଆନ୍ଦୋଳନର ନେତା ଅହିଂସା ସଂଗ୍ରାମରେ କାରାମୁକ୍ତି ପାଇଁ ଜନଗଣଙ୍କୁ ପ୍ରରୋଚିତ କରୁଥାନ୍ତି ।

ଏହି ଡାଣ୍ଡୀଯାତ୍ରା କାଳରେ ରାଜେନ୍ଦ୍ର ପ୍ରସାଦ ଏହ୍ଲାବାଦର ଜାତୀୟ କଂଗ୍ରେସର କାର୍ଯ୍ୟକାରୀ ସମିତି ବୈଠକରେ ଭାଗ ନେଇଥିଲେ । ସେ ଅଧିବେଶନ ପରେ ପରେ ଅହମଦାବାଦର ଶହେ ମାଇଲ ଦୂରରେ ଜାମ୍ବୁ- ସାରରେ ଗାନ୍ଧିଜୀଙ୍କୁ ଭେଟିଥିଲେ । କିଛି ଦୂର ଡାଣ୍ଡିଯାତ୍ରା ରେ ଯାଇ ସେ ଫେରିଆସିଲେ । ଅପ୍ରେଲ ୬ ତାରିଖରେ ସେ ବିହାରରେ ବ୍ୟାପକ ସତ୍ୟାଗ୍ରହର ସଙ୍ଗଠନ କଲେ । ଗାନ୍ଧିଜୀ ୫ ତାରିଖରେ ଡାଣ୍ଡିରେ ପହଞ୍ଚି, ୬ ତାରିଖ ଦିନ ମୁଠାଏ ଲୁଣିଆମାଟି ଉଠାଇ ଆଇନ୍-ଭଙ୍ଗ କଲେ । ଦେଶସାରା ବୈପ୍ଳବିକ ଶିହରଣ ଖେଳିଗଲା । ସଙ୍ଗଠିତ ଭାବରେ ସାରା ଭାରତରେ ସତ୍ୟାଗ୍ରହ ବ୍ରିଟିଶ ସରକାରଙ୍କୁ ଭୟଭୀତ କଲା । ଏହି ଆନ୍ଦୋଳନକୁ ଦବାଇବା ପାଇଁ ସୈନ୍ୟବାହିନୀ ଗୁଳି ଚାଳନା କରିବାକୁ ରାଜିହେଲେ ନାହିଁ । ମେ ୫ତାରିଖରେ ଧରସ୍ନାଠାରେ ଲୁଣ ଗୋଦାମ ଦଖଲ କରିବାକୁ ଗାନ୍ଧିଜୀ ଆହ୍ୱାନ ଦେଲେ । ଏଥିପାଇଁ ସେ ବନ୍ଦୀ ହେଲେ । ଦେଶସାରା ତାଙ୍କ ଗିରଫଦାରୀ ବିରୁଦ୍ଧରେ ସଭା, ଶୋଭାଯାତ୍ରା, ହରତାଳ ଆଦି ହେଲା । ଅବସ୍ଥା ଆୟତ୍ତକୁ ନ ଆସିବାରୁ ବଡ଼ଲାଟ ଇରଉଇନ୍ ଗାନ୍ଧିଜୀଙ୍କ ସହିତ ପରାମର୍ଶ କରିବାକୁ ଚାହିଁଲେ । ସେତେବେଳକୁ ୯୦ହଜାର ସତ୍ୟାଗ୍ରହୀ ବନ୍ଦୀ ଓ ନିର୍ମମ ଭାବରେ ଅତ୍ୟାଚାରିତ ହୋଇଥିଲେ । ବିହାରରେ ଏହି ଆନ୍ଦୋଳନର ନେତାଭାବରେ ରାଜେନ୍ଦ୍ର ପ୍ରସାଦ ବନ୍ଦୀ ହୋଇଥିଲେ । ଜନତା ଉପରେ ତାଙ୍କର ପ୍ରଭାବ ଦେଖି ସରକାର ଭୟଭୀତ ହୋଇଯାଇଥିଲେ ।

ବର୍ଷା ଋତୁ ଆସିବାରୁ ସତ୍ୟାଗ୍ରହୀମାନେ ବିଦେଶୀ ଲୁଗା ବର୍ଜନ ଏବଂ ନିଶା ନିବାରଣ ପାଇଁ ସତ୍ୟାଗ୍ରହ ଚାଲୁରଖିଲେ । ବିହାରର ବିହପୁର ଗ୍ରାମରେ ଗଞ୍ଜେଇ ଦୋକାନ ଆଗରେ ଧାରଣା ଦେଉଥିବା ସତ୍ୟାଗ୍ରହୀମାନଙ୍କୁ ଗିରଫ କରାଗଲା । ରାଜେନ୍ଦ୍ର ପ୍ରସାଦ ସେଠାରେ ସମବେତ ହଜାର ହଜାର ଲୋକଙ୍କୁ ଅହିଂସାତ୍ମକ ସତ୍ୟାଗ୍ରହ ଆନ୍ଦୋଳନ ବିଷୟରେ ଉଦ୍‌ବୋଧନ ଦେଉଥାନ୍ତି । ପୋଲିସ ଜନତା ଉପରେ ଲାଠିମାଡ଼ ଆରମ୍ଭ କରିଦେଲେ । ରାଜେନ୍ଦ୍ର ପ୍ରସାଦଙ୍କୁ ଲାଠିମାଡ଼ରୁ ରକ୍ଷା କରିବାକୁ ଯାଇ ଜଣେ ସ୍ୱେଚ୍ଛାସେବୀ ଗୁରୁତର ଭାବରେ ଆହତ ହେଲେ । ରାଜେନ୍ଦ୍ର ପ୍ରସାଦଙ୍କୁ ମେଣ୍ଟ ଜୁଲାଇ ମାସରେ ଗିରଫ କରାଗଲା । ବନ୍ଦୀ ଜୀବନରେ ବ୍ୟକ୍ତିଗତ ଭାବରେ ତାଙ୍କୁ ମିଳୁଥିବା ସୁବିଧାକୁ ସେ ପ୍ରତ୍ୟାଖ୍ୟାନ କରିଥିଲେ । ସାଥୀ ବନ୍ଦୀମାନଙ୍କ ସହିତ ବଗଡ଼ା ଭାତ ଖାଇ ସେ ସରଳ ଜୀବନ ଯାପନ କରୁଥିଲେ । ତାଙ୍କର ଜଣେ ପୂର୍ବତନ ମହକିଲ ମାଜିଷ୍ଟ୍ରେଟ ରୂପେ ତାଙ୍କୁ ୬ ମାସ କାରାଦଣ୍ଡ ଆଦେଶ ଦେଇ ହଜାରିବାଗ ଜେଲକୁ ପଠାଇଥିଲେ । ଜେଲରେ ସୂତା କାଟିବା ଓ ବସ୍ତ୍ର ପଢ଼ିବା ସଙ୍ଗେ ସଙ୍ଗେ ଲୁଗାବୁଣା ମଧ୍ୟ ସେ ଶିଖିଥିଲେ । ଗାନ୍ଧିଜୀଙ୍କର ବିଭିନ୍ନ ପ୍ରବନ୍ଧକୁ ବିଷୟ ଅନୁସାରେ ଭାଗ କରି ସେ ବହୁ ଗାନ୍ଧୀ-ସାହିତ୍ୟର ସଙ୍କଳନ ଓ ସମ୍ପାଦନ ମଧ୍ୟ କରିଥିଲେ । ବିଭିନ୍ନ ସ୍ତରର ଲୋକଙ୍କୁ ନିବିଡ଼ ଭାବରେ ଜାଣିବାର ସୁଯୋଗ ଏବଂ ଘନିଷ୍ଠ ଭାବେ ସମ୍ପର୍କର ଧାରା ସେ ଜେଲ ଜୀବନରେ ଲାଭ କରିଥିଲେ ।

ଗାନ୍ଧୀ-ଇରଉଇନ୍ ଚୁକ୍ତି ସମ୍ପାଦିତ ହୋଇଗଲା । କିନ୍ତୁ ଲାହୋର କଂଗ୍ରେସରେ ଗୋଲଟେବୁଲ ବୈଠକରେ ଯୋଗ ନ ଦେବା ପାଇଁ ନିଷ୍ପତ୍ତି ହୋଇସାରିଥିଲା । ତଥାପି ଚୁକ୍ତିକୁ ସମ୍ମାନ ଦେଖାଇ ମିଳାମିଶା ଦ୍ୱାରା ଜାତୀୟ ହିତଭାବେ କାଳେ କିଛି ହାସଲ ହୋଇଯାଇପାରେ, ଏହି ଆଶାରେ କଂଗ୍ରେସ ନେତାମାନେ ବୈଠକରେ ଯୋଗଦେବା ପାଇଁ ସ୍ଥିରକଲେ । ଏହି ମିଳାମିଶା ଦ୍ୱାରା ମୁକ୍ତି ଆନ୍ଦୋଳନର ଅବସାନ ଘଟିବ ବୋଲି ସରକାର ଭାବୁଥାନ୍ତି । ୧୨ ନଭେମ୍ବର ୧୯୩୦ ମସିହାରେ ପ୍ରଥମ ଗୋଲଟେବୁଲ ବୈଠକ ଆରମ୍ଭବେଳକୁ ଭାରତରେ ଆଇନ ଅମାନ୍ୟ ଆନ୍ଦୋଳନ ଜୋରରେ

ଚାଲିଥାଏ । କି ପ୍ରକାର ଶାସନ କ୍ଷମତା ଭାରତ ପାଇବ, ତାହା ଗୋଲ-ଟେବୁଲ ବୈଠକରେ ଆଲୋଚନା କରାଗଲା । ୧୯୩୧ ଜାନୁଆରୀ ୨୬ରେ କଂଗ୍ରେସ କାର୍ଯ୍ୟକାରୀ କମିଟିର ସଦସ୍ୟମାନଙ୍କୁ ଜେଲରୁ ଖଲାସ କରି-ଦିଆଗଲା ।

ପୂର୍ବରୁ ଭାରତୀୟ ନେତାମାନଙ୍କର ବ୍ୟକ୍ତିଗତ ମନୋମାଳିନ୍ୟର ମାତ୍ରା କମିଯାଇଥାଏ । ଖ୍ରୀ. ୧୯୨୮ରେ କଲିକତା କଂଗ୍ରେସରେ ସ୍ୱରାଜ ଦଳର ନେତା ପଣ୍ଡିତ ମୋତିଲାଲ ସଭାପତି ହୋଇଥିଲେ । ଖ୍ରୀ. ୧୯୨୯ ଲାହୋର କଂଗ୍ରେସରେ ମହାତ୍ମା ଗାନ୍ଧୀ ସଭାପତି ହେବାର କଥା ଥିଲା । କିନ୍ତୁ ସ୍ୱରାଜ ଦଳକୁ କଂଗ୍ରେସର ସଂସଦୀୟ ଶାଖା ବୋଲି ସ୍ୱୀକୃତି ଏକ ସଙ୍ଗଠନଭୁକ୍ତ କରିବା ପାଇଁ ଗାନ୍ଧୀ ମୋତିଲାଲଙ୍କ ଆପୋଷ ଆଲୋଚନା ଚାଲିଥିଲା । ପରିଣତିରେ ଗାନ୍ଧୀଙ୍କ ଅନୁଗାମୀ ଏବଂ ମୋତିଲାଲଙ୍କର ଏକମାତ୍ର ପୁତ୍ର ଜବାହରଲାଲଙ୍କୁ ଲାହୋରୀ କଂଗ୍ରେସର ସଭାପତି କରିବା ପାଇଁ ଉଭୟ ନେତା ରାଜି ହୋଇଗଲେ । ଏହି ରାଜିନାମାକୁ ଗାନ୍ଧିଜୀ ନାଟକୀୟ ଭାବରେ କାର୍ଯ୍ୟକାରୀ କରାଇ ରାଜନୈତିକ ମତଭେଦକୁ ସୀମିତ କରି-ଦେଇଥିଲେ ।

ତେଣୁ ମୋତିଲାଲଙ୍କ ନେତୃତ୍ୱରେ ଖ୍ରୀ. ୧୯୩୧ ଫେବୃଆରୀରେ ପୁନର୍ବାର କଂଗ୍ରେସର କାର୍ଯ୍ୟକାରୀ କମିଟି ବସିଲା । ଏଥିରେ ରାଜେନ୍ଦ୍ର ପ୍ରସାଦ ସକ୍ରିୟ ଅଂଶ ଗ୍ରହଣ କରିଥିଲେ । ସେ ମୋତିଲାଲଙ୍କ ଶେଷ ଜୀବନରେ ତାଙ୍କ ନିକଟରେ ରହିଥିଲେ । ସେହି ବର୍ଷ ଫେବୃଆରୀ ୬ ତାରିଖରେ ମୋତିଲାଲ ପରଲୋକ ଗମନ କଲେ । ଲବଣ ସତ୍ୟାଗ୍ରହ ଓ ଆଇନ ଅମାନ୍ୟ ଆନ୍ଦୋଳନଜନିତ ପରିସ୍ଥିତିର ସମାଧାନ ପାଇଁ ଗାନ୍ଧିଜୀଙ୍କୁ ବନ୍ଦୀ ସ୍ତରରୁ ଛୁଡ଼ାଗଲା । ତେଣୁ ଗାନ୍ଧିଜୀ ବଡ଼ଲାଟ ଇର୍‌ଉଇନ୍‌ଙ୍କ ମନ୍ତ୍ରଣା ଓ ସ୍ଥିରୀକାନ୍ତ ସମ୍ଭବପର ହୋଇଗଲା । ଏହି ଚୁକ୍ତିରେ ଦେଶରକ୍ଷା, ବୈଦେଶିକ ବ୍ୟାପାର ଦାୟିତ୍ୱ ବ୍ରିଟିଶ ସରକାରଙ୍କ ଉପରେ ରହିବ ଏବଂ ସ୍ୱାୟତ୍ତ ଶାସନ ଅଧିକାର ଦେଶବାସୀ ଜନ ପ୍ରତିନିଧିମାନଙ୍କୁ ଦେଇ ଦିଆଯିବ । କେତେକ ଅଞ୍ଚଳରେ ସାଧାରଣ ଲୋକଙ୍କୁ ସ୍ୱାଧୀନ ଭାବରେ ଲୁଣ ମାରିବାର ଅଧିକାର

ମିଳିବ । ସବୁ ଶ୍ରେଣୀର ରାଜନୈତିକ ବନ୍ଦୀମାନଙ୍କୁ ମୁକ୍ତ କରିଦିଆଯିବ ଏବଂ ବାଜ୍ୟାପ୍ତ ସମ୍ପତ୍ତି ସବୁ ଫେରାଇ ଦିଆଯିବ । ବହୁ ଦ୍ୱିଧା ଏବଂ ଆଶଙ୍କାରେ କେବଳ ଗାନ୍ଧିଜୀଙ୍କ ପ୍ରଭାବ ଯୋଗୁଁ ଜାତୀୟ କଂଗ୍ରେସ ଏହି ଚୁକ୍ତିକୁ ସନ୍ଧି ବୋଲି କହିଲେ ମଧ୍ୟ ଗ୍ରହଣ କରିନେଇଥିଲେ । ଲାହୋର କଂଗ୍ରେସର ପୂର୍ଣ୍ଣ ସ୍ୱରାଜର ସିଦ୍ଧାନ୍ତକୁ ଖ୍ରୀ. ୧୯୩୧ର ମାର୍ଚ୍ଚ ମାସରେ ଅନୁଷ୍ଠିତ କରାଚୀ କଂଗ୍ରେସରେ ସଂଶୋଧନ କରାଯାଇଥିଲା । ଜବାହରଲାଲ, ରାଜେନ୍ଦ୍ର ପ୍ରସାଦ ପ୍ରମୁଖ ବିଶିଷ୍ଟ ନେତାମାନେ ଏହି ଚୁକ୍ତିକୁ ନାପସନ୍ଦ କଲେ ମଧ୍ୟ ତତ୍କାଳୀନ ନେତୃତ୍ୱର ଶୃଙ୍ଖଳାବଦ୍ଧ ସୈନିକ ହିସାବରେ ଗୃହୀତ ସିଦ୍ଧାନ୍ତକୁ ମାନିନେଇଥିଲେ ।

ଇରଉଇନ୍‌ଙ୍କ ପରେ ଉଇଲିଂଡନ ବଡଲାଟ ହୋଇ ଆସିଲେ । ନେତାମାନଙ୍କ ସହିତ ସେ ଭଲ ସମ୍ପର୍କ ରଖି ନ ପାରିବାରୁ ପୁନର୍ବାର ରାଜନୈତିକ ଅଶାନ୍ତିର ଉପକ୍ରମ ହେଲା । ସତ୍ୟାଗ୍ରହ ପ୍ରତ୍ୟାହୃତ ହୋଇଥିଲେ ମଧ୍ୟ ସତ୍ୟାଗ୍ରହୀମାନଙ୍କୁ ଜେଲରୁ ଖଲାସ କରିବା ବାଟରେ ସରକାରୀ ଅଫିସରମାନେ ପ୍ରତିବନ୍ଧକ ସୃଷ୍ଟି କରୁଥିଲେ । ସେଥିପାଇଁ ରାଜେନ୍ଦ୍ର ପ୍ରସାଦ ବିହାରରେ ରାଜବନ୍ଦୀଙ୍କ ମୁକ୍ତି ଲାଗି ବହୁ ହଇରାଣ ହରକତ ହୋଇଥିଲେ । ଗାନ୍ଧିଜୀ ୧୯୩୧ରେ ଅନୁଷ୍ଠିତ ଦ୍ୱିତୀୟ ଗୋଲଟେବୁଲ ବୈଠକରେ ଯୋଗଦେଲେ । ଏହି ବୈଠକରେ ସଂଖ୍ୟାଲଘୁ ସମ୍ପ୍ରଦାୟଙ୍କ ପାଇଁ ସ୍ୱତନ୍ତ୍ର ନିର୍ବାଚନ ମଣ୍ଡଳୀ ଏବଂ ଅନ୍ୟାନ୍ୟ ସ୍ୱତନ୍ତ୍ର ସୁବିଧା ପାଇଁ ଦାବୀ ହୋଇଥିଲା । ଜାତି ଧର୍ମ ନିର୍ବିଶେଷରେ ଭାରତର ଜାତୀୟବାଦୀ ନେତା ମହାତ୍ମା ଗାନ୍ଧୀ ଏଥିରେ ସମ୍ମତ ନ ହୋଇ ଡିସେମ୍ବର ମାସରେ ଭାରତ ଫେରିଆସିଲେ । ବିଲାତର ରାଜନୀତିଜ୍ଞ ଚର୍ଚ୍ଚିଲ ଗାନ୍ଧିଜୀଙ୍କୁ 'ଅର୍ଦ୍ଧନଗ୍ନ ଫକୀର' ବୋଲି ମଧ୍ୟ ପରିହାସ କରିଥିଲେ ।

ମୁକ୍ତି ଆନ୍ଦୋଳନକୁ ଦମନ କରିବା ପାଇଁ ସରକାର କୌଶଳରେ ଲାଗିପଡ଼ିଲେ । ସରକାରୀ ଅମଲାମାନେ କ୍ଷମତାର ଅସଦ୍ ବ୍ୟବହାର କଲେ । ରାଜନୀତିକ ବନ୍ଦୀମାନେ ଖଲାସ ହେଲେ ନାହିଁ । କଂଗ୍ରେସକୁ ବେଆଇନ୍ ଘୋଷଣା କରି ନେତାମାନଙ୍କୁ ବନ୍ଦୀ କରାଗଲା । ଖ୍ରୀ. ୧୯୩୨ ଜାନୁୟାରୀ

୪ରେ ରାଜେନ୍ଦ୍ର ପ୍ରସାଦ ବନ୍ଦୀ ହେଲେ । ସେ ବିହାରର ବାଙ୍କିପୁର ଜେଲରେ ରହିଲେ । ଲର୍ଡ ଉଇଲିଙ୍ଗଡନ୍ ସାଧାରଣସଭା ଓ ଶୋଭାଯାତ୍ରାକୁ ନିଷିଦ୍ଧ କରିଦେଲେ । କିନ୍ତୁ ଦଣ୍ଡ ନୀତିରେ ସେ ମୁକ୍ତି ଆନ୍ଦୋଳନକୁ ଦବାଇ ପାରିଲେ ନାହିଁ । ବରଂ ମୁକ୍ତି ଆନ୍ଦୋଳନ ଆହୁରି ପ୍ରଖର ହୋଇଗଲା । ୧୯୩୨ ମାର୍ଚରେ ପୁରୀରେ କଂଗ୍ରେସ ଅଧିବେଶନ ହେବାର ଥିଲା । ସେଥିପାଇଁ ରାଜେନ୍ଦ୍ର ପ୍ରସାଦ ସଭାପତି ନିର୍ବାଚିତ ହୋଇଥିଲେ । କିନ୍ତୁ ଅନିବାର୍ଯ୍ୟ କାରଣ ପାଇଁ ଅଧିବେଶନ ପୁରୀରେ ନ ହୋଇ ଦିଲ୍ଲୀରେ ଅନୁଷ୍ଠିତ ହେଲା । ରାଜେନ୍ଦ୍ର ପ୍ରସାଦଙ୍କ ବଦଳରେ ମହାମନା ମାଳବ୍ୟଙ୍କ ସଭାପତି ହେବାର କଥା ହେଲା । ସେ ମଧ୍ୟ ଗିରଫ ହୋଇଗଲେ । କଂଗ୍ରେସ ତୃତୀୟ ଗୋଲ ଟେବୁଲ ବୈଠକରେ ଯୋଗ ନ ଦେବା ପାଇଁ ସିଦ୍ଧାନ୍ତ କଲା ।

ସଂଖ୍ୟାଲଘୁ ସମ୍ପ୍ରଦାୟର ସ୍ୱତନ୍ତ୍ର ସୁବିଧା ବିଷୟରେ କିଛି ସମାଧାନ ହୋଇପାରିଲା ନାହିଁ । ତେଣୁ ଅସ୍ପୃଶ୍ୟ ଜାତିର ଲୋକମାନଙ୍କ ସ୍ୱତନ୍ତ୍ର ନିର୍ବାଚନ ମଣ୍ଡଳୀର ବ୍ୟବସ୍ଥା ମାତ୍ର ୨୦ ବର୍ଷ ଯାଏ ରହିବ; ସେମାନେ ସାଧାରଣ ସ୍ଥାନରୁ ମଧ୍ୟ ପ୍ରତିନିଧି ହୋଇପାରିବେ—ଏହି ମର୍ମରେ ବ୍ରିଟିଶ ପ୍ରଧାନମନ୍ତ୍ରୀଙ୍କ ନୀତି-ଘୋଷଣାକୁ ଗାନ୍ଧିଜୀ ବିରୋଧ କଲେ । ଅସ୍ପୃଶ୍ୟ ହରିଜନମାନେ ହିନ୍ଦୁ ସମାଜର ଅନ୍ତର୍ଭୁକ୍ତ । ସ୍ୱାତନ୍ତ୍ର୍ୟ ପ୍ରଚଳିତ ବିଭେଦକୁ ସ୍ଥାୟୀ କରିଦେବ । ମୁସଲମାନ ସମ୍ପ୍ରଦାୟ ପାଇଁ ସ୍ୱତନ୍ତ୍ର ସୁବିଧାରୁ ତିକ୍ତତା ସୃଷ୍ଟି ସାର ହେବ—ଏହା ହିଁ ଗାନ୍ଧିଜୀଙ୍କ ଯୁକ୍ତି ଥିଲା । ସେ ବ୍ରିଟିଶ ପ୍ରଧାନ ମନ୍ତ୍ରୀଙ୍କୁ ଚିଠି ଲେଖି ଘୋଷଣାକୁ ପ୍ରତ୍ୟାହାର କରିନେବା ପାଇଁ ନିବେଦନ କଲେ । ଅନ୍ୟଥା ସେ ସେପ୍ଟେମ୍ବର ୨୦ ତାରିଖଠାରୁ ଆମରଣ ଅନଶନ କରିବେ ବୋଲି ଜଣାଇଲେ । ଏ ନିବେଦନକୁ ସରକାର କର୍ଣ୍ଣପାତ ନ କରିବାରୁ ଗାନ୍ଧିଜୀ ପୁନାରେ ଅନଶନ କଲେ । ରାଜେନ୍ଦ୍ର ପ୍ରସାଦ ତାଙ୍କୁ ଏହି ଅନଶନ ନ କରିବା ପାଇଁ ବହୁତ ବୁଝାଇଲେ । କିନ୍ତୁ ଗାନ୍ଧିଜୀ ଅଟଳ ରହିଲେ । ତେଣୁ ରାଜେନ୍ଦ୍ର ପ୍ରସାଦ ଦେଶବାସୀଙ୍କୁ ଲୁହଲହୁଦେଇ ସାମ୍ପ୍ରଦାୟିକ ବିଭେଦକୁ ଭୁଲିଯାଇ ଗାନ୍ଧିଜୀଙ୍କ ଜୀବନ ରକ୍ଷା ପାଇଁ ନିବେଦନ କଲେ । ଏହି ନିବେଦନ ହରିଜନ ସମ୍ପ୍ରଦାୟକୁ ପ୍ରଭାବିତ କଲା ।

ହରିଜନ ନେତା ଆମ୍ବେଦକର ଓ କଂଗ୍ରେସ ନେତା ରାଜାଜୀଙ୍କ ମଧ୍ୟରେ ଚୁକ୍ତି ସମ୍ପାଦିତ ହେଲା । ହରିଜନମାନେ ସ୍ୱତନ୍ତ୍ର ନିର୍ବାଚନମଣ୍ଡଳୀ ଗ୍ରହିଲେ ନାହିଁ; କିନ୍ତୁ ଦୁଇ ଗୁଣ ସ୍ଥାନର ସୁବିଧା ପାଇଲେ । ବ୍ରିଟିଶ ପ୍ରଧାନମନ୍ତ୍ରୀ ଏ ମିଳାମିଶାକୁ ସ୍ୱୀକାର କଲେ । ଗାନ୍ଧିଜୀ ଅନଶନ ଭାଙ୍ଗିଲେ । ମନ୍ଦିର ପ୍ରବେଶ, ସାଧାରଣ କୂଅରୁ ପାଣି ନେବା ଆଦି ସମୂହ ସୁବିଧା ହରିଜନମାନଙ୍କୁ ଦେବା ଏବଂ ଅସ୍ପୃଶ୍ୟତା ଜନିତ ଘୃଣାଭାବ ଦୂର କରିବା ପାଇଁ ରାଜେନ୍ଦ୍ର ପ୍ରସାଦଙ୍କ ନେତୃତ୍ୱରେ 'ହରିଜନ ସେବକ ସଂଘ' ସ୍ଥାପିତ ହେଲା । ସେ ରାଜାଜୀଙ୍କ ସହିତ ଦକ୍ଷିଣ ଭାରତରେ ହରିଜନମାନଙ୍କର ମନ୍ଦିର ପ୍ରବେଶ ଅଧିକାର ପାଇଁ ଉଦ୍ୟମ କରିଥିଲେ । ହଠାତ୍ ରାଜନୀତିକ ବିପ୍ଳବ ପରିବର୍ତ୍ତେ ଗଠନମୂଳକ କାର୍ଯ୍ୟଦ୍ୱାରା ସମାଜ ସଂସ୍କାର ପୂର୍ବକ ଜାତୀୟ ଆନ୍ଦୋଳନକୁ ବଳିଷ୍ଠ କରିବା ପାଇଁ ରାଜେନ୍ଦ୍ର ପ୍ରସାଦଙ୍କ ଜୀବନର ଆଦର୍ଶ ଥିଲା । ସେ ମୁକ୍ତି ସଂଗ୍ରାମ ପାଇଁ ଚାନ୍ଦା ଆଦାୟ କରୁଛନ୍ତି ବୋଲି ଅଭିଯୋଗରେ ବନ୍ଦୀ ହେଲେ । କାରାଜୀବନରେ ସେ ପୁଣି ଶ୍ୱାସରୋଗର ଶିକାର ହେଲେ । ଖ୍ରୀ. ୧୯୩୪ ଜାନୁୟାରୀରେ ତାଙ୍କର ସ୍ୱାସ୍ଥ୍ୟ ଉଦ୍‌ବେଗ-ଜନକ ହେବାରୁ ଏବଂ ସେହି ମାସ ୧୫ ତାରିଖରେ ବିହାରରେ ସାଙ୍ଘାତିକ ଭୂମିକମ୍ପ ହେବାରୁ ତାଙ୍କୁ ସରକାର ମୁକ୍ତି ଦେଲେ । ଅସୁସ୍ଥତା ସତ୍ତ୍ୱେ ତାଙ୍କ ନେତୃତ୍ୱରେ ରିଲିଫ କମିଟି ଗଠାହୋଇ ବିପଦଗ୍ରସ୍ତ ଲୋକଙ୍କୁ ସାହାଯ୍ୟ ଦିଆଗଲା । କ୍ଷତଗ୍ରସ୍ତ ଲୋକଙ୍କ ମନରେ ସାହସ ଓ ଉତ୍ସାହ ଫେରାଇ ଆଣିବା ପାଇଁ ଚେଷ୍ଟା କରାଯାଉଥିଲା । ରାଜେନ୍ଦ୍ର ପ୍ରସାଦଙ୍କ ପୁତ୍ର ମୃତ୍ୟୁଞ୍ଜୟ ପ୍ରସାଦଙ୍କ ସହିତ ଏବଂ ବିଶିଷ୍ଟ କଂଗ୍ରେସ ନେତା ବ୍ରଜକିଶୋର ପ୍ରସାଦଙ୍କ ଜୋଇଁ ଜୟପ୍ରକାଶ ନାରାୟଣଙ୍କୁ ରିଲିଫ୍ କମିଟିର ମୁଖ୍ୟ କାର୍ଯ୍ୟାଳୟର ଦାୟିତ୍ୱ ମିଳିଲା । ଭୂମିକମ୍ପ ପରେ ପରେ ଭୀଷଣ ବନ୍ୟା ହେଲା । ତେଣୁ ଦୀର୍ଘ ଅଠର ମାସ କାଳ ସଂଗୃହୀତ ୩୦ ଲକ୍ଷ ଟଙ୍କାରେ ରିଲିଫ୍ କାମ ଶୃଙ୍ଖଳିତ ଭାବରେ ଚାଲିଲା ।

ଜୁଲାଇ ମାସରେ ରାଜେନ୍ଦ୍ର ପ୍ରସାଦଙ୍କ ବଡ଼ଭାଇ ମରିଗଲେ । ତେଣୁ ପରିବାର ଓ ଜମିଦାରୀର ଦାୟିତ୍ୱ ମଧ୍ୟ ରାଜେନ୍ଦ୍ର ପ୍ରସାଦଙ୍କ ଉପରେ ପଡ଼ିଲା । ଖ୍ରୀ. ୧୯୩୦ର କଂଗ୍ରେସ ଅଧିବେଶନରେ ସେ ସଭାପତି ହେଲେ । ଇତିପୂର୍ବରୁ

ସରକାରଙ୍କଦ୍ୱାରା ବେଆଇନ ବୋଲି ଘୋଷିତ କଂଗ୍ରେସର ଜନ-ସମ୍ମାନ କିଞ୍ଚିତ ହ୍ରାସ ପାଇଯାଇଥିଲା । ଦେଶପ୍ରେମୀ ଅନୁରକ୍ତ କଂଗ୍ରେସ ସଭ୍ୟମାନେ ଗୋପନ ଆନ୍ଦୋଳନ ଚଳାଇଲେ । ସୁବିଧାବାଦୀମାନେ ଆନ୍ଦୋଳନରୁ ଓହରିଗଲେ । କଂଗ୍ରେସ ଆଇନ-ଅମାନ୍ୟ ଆନ୍ଦୋଳନ ଉଠାଇଦେଲେ । ସରକାର ମଧ୍ୟ କଂଗ୍ରେସ ପ୍ରତି ନିଷେଧାଜ୍ଞା ଉଠାଇନେଲେ । ତେଣୁ ସେ ବର୍ଷ ବମ୍ବେ କଂଗ୍ରେସ ରାଜେନ୍ଦ୍ର ପ୍ରସାଦଙ୍କ ସଭାପତିତ୍ୱରେ ସୁରୁଖୁରୂପେ ଅନୁଷ୍ଠିତ ହେଲା । ନିରପେକ୍ଷ ରାଜେନ୍ଦ୍ର ପ୍ରସାଦ ମହାମନା ମାଳବ୍ୟଙ୍କୁ ସମ୍ମାନ କରୁଥିଲେ ମଧ୍ୟ ଗୋଟିଏ ବିଷୟବସ୍ତୁ ସମ୍ପର୍କରେ ଦୁଇଥର କହିବା ପାଇଁ ଅନୁମତି ଦେଇ ନ ଥିଲେ । କେନ୍ଦ୍ର ବିଧାନସଭା ପାଇଁ ନିର୍ବାଚନରେ ଭାଗ ନେବାକୁ ବମ୍ବେ ଅଧିବେଶନ ନିଷ୍ପତ୍ତି କଲା । ନିର୍ବାଚନରେ ୪୯ଟି ସ୍ଥାନରୁ କଂଗ୍ରେସ ୪୪ଟି ସ୍ଥାନ ହାସଲ କଲା । ନିର୍ବାଚନ ପ୍ରଚାରରେ ରାଜେନ୍ଦ୍ର ପ୍ରସାଦ ବହୁ ପ୍ରଦେଶକୁ ଯାଇଥିଲେ । ସେ ହିନ୍ଦୁ ମୁସଲମାନ ସଂହତି ପାଇଁ ଜିନ୍ନାଙ୍କ ସହିତ ବହୁବାର ଆଲୋଚନା କରିଥିଲେ ।

ପରବର୍ତ୍ତୀ ଲକ୍ଷ୍ନୌ କଂଗ୍ରେସରେ ଜବାହରଲାଲ ସଭାପତି ହେଲେ । ସେ ସମାଜବାଦୀ ମତବାଦ ପ୍ରତି ଆକୃଷ୍ଟ ରହି ମଧ୍ୟ ଗାନ୍ଧିଜୀଙ୍କ ପାଇଁ କଂଗ୍ରେସରେ ରହିଥିଲେ । ଏ ପ୍ରକାର ଦ୍ୱୈତ ମନୋଭାବକୁ ରାଜେନ୍ଦ୍ର ପ୍ରସାଦ ବିରୋଧ କରିଥିଲେ । ସେ ହିନ୍ଦୀ ସାହିତ୍ୟ ସମ୍ମେଳନର ନାଗପୁର ଅଧିବେଶନରେ ସଭାପତି ହୋଇ ହିନ୍ଦୀ ଓ ଉର୍ଦ୍ଦୁ ସମନ୍ୱୟରେ ହିନ୍ଦୁସ୍ଥାନୀ ଭାଷାକୁ ଭାରତର ରାଷ୍ଟ୍ରଭାଷା କରିବା ପାଇଁ କହିଥିଲେ । ସରଳ ହିନ୍ଦୀଭାଷାର ପ୍ରଚଳନ ଜାତୀୟ ସ୍ତରରେ ସୁରୁଖୁରୂପେ କରିବା ପାଇଁ ସେଠ୍ ଯମୁନାଲାଲ ବଜାଜଙ୍କ ନେତୃତ୍ୱରେ ଗଠିତ ରାଷ୍ଟ୍ରଭାଷା ପ୍ରଚାର ସମିତିର ସେ ସଭାପତି ହୋଇଥିଲେ । ତାଙ୍କର ପରାମର୍ଶରେ ଗଠିତ ଦକ୍ଷିଣ ଭାରତ ହିନ୍ଦୀ ପ୍ରଚାର ସଭା ଦାକ୍ଷିଣାତ୍ୟରେ ହିନ୍ଦୀ ପ୍ରଚାର କାର୍ଯ୍ୟ କରୁଥିଲା । ଇତିମଧ୍ୟରେ କଂଗ୍ରେସର ସମାଜବାଦୀ ସଦସ୍ୟମାନେ ସଙ୍ଗଠନ ଭିତରେ କଂଗ୍ରେସ-ସୋସିଆଲିଷ୍ଟ ପାର୍ଟି ପ୍ରତିଷ୍ଠା କଲେ । ଚତୁରତାର ସହିତ ଜବାହରଲାଲ ଏହି ସଙ୍ଗଠନରେ ଯୋଗଦେଲେ ନାହିଁ । କିନ୍ତୁ କଂଗ୍ରେସ ସଭାପତି ହିସାବରେ ସେ

କାର୍ଯ୍ୟକାରୀ କମିଟିକୁ ୧୦ ଜଣ ସଭ୍ୟ ମନୋନୀତ କରିବା ସଙ୍ଗେ ସଙ୍ଗେ ଆଉ ୪ ଜଣ ସମାଜବାଦୀ ସଭ୍ୟଙ୍କୁ ମଧ୍ୟ ମନୋନୀତ କଲେ । ଫଳରେ ରାଜେନ୍ଦ୍ର ପ୍ରସାଦ, ସର୍ଦ୍ଦାର ପଟେଲ ପ୍ରଭୃତି ୭ଜଣ ବିଶିଷ୍ଟ ନେତା କାର୍ଯ୍ୟକାରୀ ସମିତିରୁ ଇସ୍ତଫା ଦେଇଦେଲେ । କଂଗ୍ରେସ ଆନୁଷ୍ଠାନିକ ଭାବରେ ସମାଜବାଦକୁ ଗ୍ରହଣ ନ କଲାଯାଏ ଜୋରଜବରଦସ୍ତି ସମାଜବାଦକୁ ଅନୁଷ୍ଠାନ ଭିତରେ ପୂରେଇବା ଅନୁଚିତ; ଜାତୀୟ ମୁକ୍ତି ପରେ କଂଗ୍ରେସ ହୁଏତ ସମାଜବାଦକୁ ଗ୍ରହଣ କରିନେଇପାରେ—ଏହା ସେମାନଙ୍କର ଯୁକ୍ତି ଥିଲା । ଅବଶ୍ୟ ମୁକ୍ତି ଆନ୍ଦୋଳନକୁ ବିଭେଦଗ୍ରସ୍ତ ନ କରିବା ପାଇଁ ସେମାନେ ଇସ୍ତଫାପତ୍ର ପ୍ରତ୍ୟାହାର କରି ନେଇଥିଲେ ।

୧୯୩୫ ମସିହା ଭାରତ ଆଇନ ଅନୁସାରେ ନିର୍ବାଚନ ପାଇଁ ପ୍ରସ୍ତୁତି ଖ୍ରୀ. ୧୯୩୭ରେ କରାଗଲା । ଏହି ସଂସଦୀୟ କାର୍ଯ୍ୟକ୍ରମ ପାଇଁ ପ୍ରଥମ କରି ସଂସଦୀୟ କମିଟି ସର୍ଦ୍ଦାର ପଟେଲ, ରାଜେନ୍ଦ୍ର ପ୍ରସାଦ ଏବଂ ମୌଲାନା ଆଜାଦ୍‌ଙ୍କୁ ନେଇ ଗଠିତ ହେଲା । କଂଗ୍ରେସ ସଦସ୍ୟମାନଙ୍କର ସେବା ପରିବର୍ତ୍ତେ କ୍ଷମତାର ଲାଳସା ପାଇଁ ରାଜେନ୍ଦ୍ର ପ୍ରସାଦ ବ୍ୟଥିତ ହେଲେ । ତଥାପି ନିର୍ବାଚନ ପରିଚାଳନାରେ ସେ କଠୋର ପରିଶ୍ରମ କରିଥିଲେ । ସର୍ବପ୍ରଥମେ ପଣ୍ଡିତ ନୀଳକଣ୍ଠଙ୍କ ନେତୃତ୍ୱରେ ଓଡ଼ିଶାରେ କଂଗ୍ରେସ ଆଶାତୀତ ଭାବରେ ବିଜୟ ହାସଲ କରି କଂଗ୍ରେସ ନେତୃତ୍ୱକୁ ବିଜୟ ସମ୍ପର୍କରେ ଆସ୍ଥାବାନ କରିଥିଲା । ସାରା ଦେଶରେ ୧୫୮୫ଟି ସ୍ଥାନରୁ କଂଗ୍ରେସ ୭୧୫ଟି ସ୍ଥାନରେ ନିର୍ବାଚିତ ହେଲା । ତତ୍‌କାଳୀନ ୧୧ଟି ପ୍ରଦେଶ ଭିତରୁ ୮ଟିରେ କଂଗ୍ରେସ ମନ୍ତ୍ରିମଣ୍ଡଳ ଦାୟିତ୍ୱ ନେଲେ । ପଞ୍ଜାବ, ସିନ୍ଧୁ ଏବଂ ଅବିଭକ୍ତ ବଙ୍ଗ ପ୍ରଦେଶରେ ମୁସ୍‌ଲିମ୍ ଲିଗ୍ ଶାସନ କଲେ ।

ପ୍ରଥମକରି କ୍ଷମତାର ସ୍ୱାଦ ଭାରତୀୟ ନେତାମାନେ ପାଇଲେ । ଏକ ପକ୍ଷରେ ଜାତୀୟ ମୁକ୍ତି ଆନ୍ଦୋଳନକୁ ସାହାଯ୍ୟ ଏବଂ ଅପର ପକ୍ଷରେ ଶାସନକଳ ସାହାଯ୍ୟରେ ଦରିଦ୍ର ଜନତାର ସେବା—ଏହି ଦୁଇ ଦାୟିତ୍ୱରେ ଦେଶୀ ମନ୍ତ୍ରିମଣ୍ଡଳ କାର୍ଯ୍ୟବ୍ୟସ୍ତ ରହିଲେ । ରାଜେନ୍ଦ୍ର ପ୍ରସାଦ ବିହାର ମନ୍ତ୍ରିମଣ୍ଡଳରେ ଯୋଗ ଦେଲେ ନାହିଁ । ସେ ମନ୍ତ୍ରିମଣ୍ଡଳର ପରାମର୍ଶଦାତା

ରହି ଭୁଫସ୍ୱାର କାର୍ଯ୍ୟକାରୀ କରାଇଥିଲେ । ଧ୍ରୁକ୍ରମ ପରିବର୍ତ୍ତେ ଆଲୋଚନା ଦ୍ୱାରା ସମସ୍ୟାର ମୁକାବିଲା କରିବା ତାଙ୍କର ରାଜନୈତିକ କୌଶଳ ଥିଲା । କ୍ଷମତାର ପରିସର ନେଇ ନିର୍ବାଚିତ ମନ୍ତ୍ରିମଣ୍ଡଳ ଏବଂ ବ୍ରିଟିଶ ଲାଟଙ୍କ ମଧ୍ୟରେ ବିବାଦ ସୃଷ୍ଟି ହେଲା । ଯୁକ୍ତପ୍ରଦେଶ (ବର୍ତ୍ତମାନର ଉତ୍ତରପ୍ରଦେଶ) ଏବଂ ବିହାରରେ ରାଜନୈତିକ ବନ୍ଦୀମାନଙ୍କୁ ଖଲାସ କରିବା ପାଇଁ ଲାଟ ମଙ୍ଗିଲେ ନାହିଁ । ଇସ୍ତଫା ଯାଏ କଥା ଗଡ଼ିବାରୁ ଶେଷକୁ ରାଜବନ୍ଦୀ ମାନେ ମୁକ୍ତହେଲେ ।

ଗାନ୍ଧିଜୀଙ୍କ ନେତୃତ୍ୱକୁ ବିରୋଧ କରି ନେତାଜୀ ସୁଭାଷଚନ୍ଦ୍ର ଜାତୀୟ କଂଗ୍ରେସର ସଭାପତି ନିର୍ବାଚିତ ହେଲେ । ନେତାଜୀଙ୍କ ଦ୍ୱାରା ମନୋନୀତ କାର୍ଯ୍ୟକାରୀ ସମିତିରେ ମତଭେଦ ହେଲା । ଫଳରେ ରାଜେନ୍ଦ୍ର ପ୍ରସାଦଙ୍କ ସମେତ ୧୨ ଜଣ ସଦସ୍ୟ ଉକ୍ତ କାର୍ଯ୍ୟକାରୀ ସମିତିରୁ ଇସ୍ତଫା ଦେଲେ । କେବଳ ନେତାଜୀଙ୍କୁ ମିଶାଇ ତାଙ୍କ ଭାଇ ଶରତଚନ୍ଦ୍ର ଏବଂ ଜବାହରଲାଲ, ଏହି ତିନିଜଣ ମାତ୍ର କାର୍ଯ୍ୟକାରୀ ସମିତିରେ ରହିଲେ । ତ୍ରିପୁରୀ କଂଗ୍ରେସରେ ନେତାଜୀଙ୍କୁ କଠୋର ଭାବରେ ସମାଲୋଚନା କରାଗଲା । ଫଳରେ ନେତାଜୀ ସୁଭାଷ ଚନ୍ଦ୍ର କଂଗ୍ରେସ ସଭାପତି ପଦରୁ ଇସ୍ତଫା ଦେଲେ । ରାଜେନ୍ଦ୍ର ପ୍ରସାଦ ତାଙ୍କ ସ୍ଥାନରେ ନୂତନ ସଭାପତି ଭାବରେ ନିର୍ବାଚିତ ହେଲେ । ସହାଧ୍ୟାୟୀ ଶରତଚନ୍ଦ୍ରଙ୍କ ଅନୁଜ ନେତାଜୀ ସୁଭାଷ ଚନ୍ଦ୍ରଙ୍କ ଦଳବିରୋଧୀ କାର୍ଯ୍ୟ ପାଇଁ ସେ ସମୂହ ସ୍ୱାର୍ଥ ଦୃଷ୍ଟିରୁ ଦୃଢ଼ କାର୍ଯ୍ୟାନୁଷ୍ଠାନ କରିଥିଲେ । ନେତାଜୀ ସୁଭାଷ କଂଗ୍ରେସରୁ ବହିଷ୍କୃତ ହୋଇ 'ଫରୱାର୍ଡ଼ ବ୍ଲକ' ଗଠନ କଲେ । ଓଡ଼ିଶା ଏବଂ ମଧ୍ୟପ୍ରଦେଶର କଂଗ୍ରେସ ମନ୍ତ୍ରିମଣ୍ଡଳ ବିରୁଦ୍ଧରେ ହୋଇଥିବା ଅଭିଯୋଗ ତଦନ୍ତ କରି ରାଜେନ୍ଦ ପ୍ରସାଦ ବିବାଦର ସମାଧାନ କରିଥିଲେ ।

ଦ୍ୱିତୀୟ ବିଶ୍ୱଯୁଦ୍ଧ ୧୯୩୯ ମସିହା ସେପ୍ଟେମ୍ବର ମାସରୁ ଆରମ୍ଭ ହୋଇଗଲା । ବ୍ୟକ୍ତିଗତ ଭାବରେ ଏ ଯୁଦ୍ଧରେ ବ୍ରିଟିଶମାନଙ୍କୁ ସାହାଯ୍ୟ କରିବା ପାଇଁ ରାଜେନ୍ଦ୍ର ପ୍ରସାଦ ଚାହୁଁଥିଲେ । କିନ୍ତୁ ଜବାହରଲାଲଙ୍କ ନେତୃତ୍ୱରେ ବିଦେଶୀ ସରକାରଙ୍କ ଯୁଦ୍ଧପାଣ୍ଠିକୁ ସାହାଯ୍ୟ ନ ଦେବା ପାଇଁ କଂଗ୍ରେସ ସ୍ଥିର କଲା । ବଡ଼ଲାଟ ଗାନ୍ଧିଜୀଙ୍କ ସହିତ ଆଲୋଚନା କଲେ ।

ବିନା ସର୍ତ୍ତରେ ଯୁଦ୍ଧଲାଗି ସାହାଯ୍ୟ ପାଇଁ ଗାନ୍ଧିଙ୍କ ସମ୍ମତ ହେଲେ । କିନ୍ତୁ ରାଜେନ୍ଦ୍ର ପ୍ରସାଦ କହିଲେ ଯେ ଭାରତକୁ ପୂର୍ଣ୍ଣ ସ୍ୱାଧୀନତା ଦେବା ପାଇଁ ବ୍ରିଟିଶ ସରକାର ରାଜିହେଲେ ଯାଇ ଭାରତବାସୀ ନିଜ ଉଦ୍ୟମରେ ସାହାଯ୍ୟ ସହଯୋଗ କରିବେ । ବଡ଼ଲାଟ ରାଜେନ୍ଦ୍ର ପ୍ରସାଦ ଓ ଜବାହରଲାଲଙ୍କ ସହିତ ଆଲୋଚନା କଲେ । ଉଭୟ ନେତା ନିଜର ସମ୍ବିଧାନ ପ୍ରଣୟନ କ୍ଷମତା ଦେଶବାସୀ ପାଆନ୍ତୁ ଏବଂ କଂଗ୍ରେସ କେନ୍ଦ୍ର ସରକାରରେ ଭାଗନେଉ—ଏହି ଦାବୀରେ ଅଟଳ ରହିଲେ । ନିଜପଟରେ ୧୯୩୫ ମସିହା ଭାରତ ଆଇନର ସଂଶୋଧନ କରିବା ପାଇଁ ବଡ଼ଲାଟ କହିଲେ । ଏଥିରେ କଂଗ୍ରେସ ରାଜିହେଲା ନାହିଁ । ସୁତରାଂ ପ୍ରଦେଶମାନଙ୍କରେ କଂଗ୍ରେସ ମନ୍ତ୍ରିମଣ୍ଡଳ ଇସ୍ତଫା ଦେବା ଉଚିତ ବୋଲି ରାଜେନ୍ଦ୍ର ପ୍ରସାଦ କହିଲେ । ଯୁଦ୍ଧଗୃହ ଓ ସୈନ୍ୟ ସଂଗ୍ରହରେ କଂଗ୍ରେସ ଭାଗ ନ ନେଉ ବୋଲି ସେ ଯୁକ୍ତି କଲେ । ଅପର ପକ୍ଷରେ କ୍ଷମତାସୀନ ମନ୍ତ୍ରୀମାନଙ୍କୁ କ୍ଷମତାରୁ ଅବ୍ୟାହତି ଦେଇ ସଂଗ୍ରାମକୁ ଗତିଶୀଳ କରାଇବାହିଁ ଅସଲ ଉଦ୍ଦେଶ୍ୟ ଥିଲା । ଇତିମଧ୍ୟରେ ମୁସଲିମ୍ ଲିଗ ଏବଂ ଜାତୀୟ କଂଗ୍ରେସର ମିଳିତ ସରକାର ଗଠନ ପାଇଁ ଜିନ୍ନା ପ୍ରସ୍ତାବ ଦେଲେ । ୧୯୩୭ ମସିହା ନିର୍ବାଚନରେ ମାତ୍ର ଶତକଡ଼ା ୫ ସ୍ଥାନରେ ନିର୍ବାଚିତ ହୋଇଥିବା ଏକ ସାମ୍ପ୍ରଦାୟିକ ଦଳ ସହିତ ମିଳିତ ମନ୍ତ୍ରିମଣ୍ଡଳ ଗଠନ କରିବା ପାଇଁ କଂଗ୍ରେସ ରାଜିହେଲା ନାହିଁ । ୧୯୪୦ ମସିହା ରାମଗଡ଼ କଂଗ୍ରେସ ଅଧିବେଶନରେ ଆଇନ ଅମାନ୍ୟ ଆନ୍ଦୋଳନକୁ ବ୍ୟାପକ କରିବା ପାଇଁ ନିଷ୍ପତ୍ତି ନିଆଗଲା ।

ରାଜେନ୍ଦ୍ର ପ୍ରସାଦ ଏହି କଂଗ୍ରେସ ଅଧିବେଶନର ସ୍ୱାଗତ କମିଟିର ସଭାପତି ଥିଲେ । ପ୍ରବଳ ବର୍ଷା ଯୋଗୁଁ ବାଧାପ୍ରାପ୍ତ ଅଧିବେଶନର ପ୍ରସ୍ତାବ-ଗୁଡ଼ିକ ପରେ କାର୍ଯ୍ୟକାରୀ ସମିତି ତଥା ନିଖିଳ ଭାରତ କଂଗ୍ରେସ କମିଟିରେ ଗୃହୀତ ହୋଇଗଲା । ତେଣୁ ଯୁଦ୍ଧକାଳୀନ ପରିସ୍ଥିତିର ଅବସ୍ଥା ଦୃଷ୍ଟିରୁ କଂଗ୍ରେସ-ବିରୋଧୀ ମୁସଲିମ୍ ଲିଗ୍‌କୁ ସରକାର ବହୁତ ସମ୍ମାନ ଓ ସୁଯୋଗ ଦେଲେ । ମୁସଲିମ୍‌ଲିଗ୍‌ର ଅନୁମୋଦନ ବିନା କଂଗ୍ରେସକୁ ସାମ୍ବିଧାନିକ ସୁଯୋଗ ଦିଆ ନ ଯାଉ ବୋଲି ଲିଗ୍ ଦାବୀ କଲା । ୧୯୪୦ ମସିହା ଡିସେମ୍ବର ମାସରେ ଲାହୋରରେ ଅନୁଷ୍ଠିତ ମୁସଲିମ୍ ଲିଗ୍ ଅଧିବେଶନରେ

ଜିନ୍ନା 'ଦୁଇଜାତି ତତ୍ତ୍ୱ' ବ୍ୟାଖ୍ୟାନ କଲେ । ଇସଲାମ୍ ଓ ହିନ୍ଦୁ ଗୋଟିଏ ଗୋଟିଏ ଧର୍ମ ନୁହେଁ—ଏକ ଦୁଇ ପୃଥକ ସାମାଜିକ ଚଳଣୀ ଏବଂ ଦୁଇଟି ସ୍ୱତନ୍ତ୍ର ନେସନ୍ ବୋଲି ଯୁକ୍ତି ହେଲା । ତେଣୁ ଇସଲାମ୍ ମତାବଲମ୍ବୀଙ୍କ ପାଇଁ ସ୍ୱତନ୍ତ୍ର ଦେଶ 'ପାକିସ୍ଥାନ' ଗଠନ ପାଇଁ ଦାବୀ ହେଲା । ଏହି ପରିସ୍ଥିତିରେ ରାଜେନ୍ଦ୍ର ପ୍ରସାଦ ବିହାର ଶ୍ରମ ତଦନ୍ତ କମିଟି, ଶିକ୍ଷା ତଦନ୍ତ କମିଟି ଓ ହିନ୍ଦୁସ୍ଥାନୀ ଭାଷା କମିଟିରେ କାର୍ଯ୍ୟ କରୁଥାନ୍ତି ।

୧୯୪୦ର ମଧ୍ୟଭାଗ ବେଳକୁ ଦ୍ୱିତୀୟ ବିଶ୍ୱଯୁଦ୍ଧ ସାଙ୍ଘାତିକ ହୋଇ ଉଠିଲା । ଅକ୍ଷ ଶକ୍ତିର ନେତା ହିଟଲରଙ୍କ ଅଭୁତପୂର୍ବ ବିଜୟରେ ବ୍ରିଟିଶ ସମେତ ମିତ୍ର ଶକ୍ତିମାନେ ଆତଙ୍କିତ ହୋଇପଡ଼ିଲେ । ସେହିବର୍ଷ ଜାତି-ଦଳର ନେତା ଚର୍ଚ୍ଚିଲଙ୍କ ପ୍ରଧାନମନ୍ତ୍ରୀ କରି ଯୁଦ୍ଧକାଳୀନ ଜାତୀୟ ମନ୍ତ୍ରି-ମଣ୍ଡଳ ଗଠିତ ହେଲା । ଜୁଲାଇ ମାସରେ ଦିଲ୍ଲୀରେ କଂଗ୍ରେସ କାର୍ଯ୍ୟକାରୀ କମିଟି ରାଜେନ୍ଦ୍ର ପ୍ରସାଦଙ୍କ ନେତୃତ୍ୱରେ କେନ୍ଦ୍ରରେ ଜାତୀୟ ସରକାର ଗଠନ ପାଇଁ ଦାବୀ କଲେ । ଏହି ଦାବୀ ସ୍ୱୀକୃତ ହେଲେ, ଭାରତ ମିତ୍ରଶକ୍ତିର ଯୁଦ୍ଧ ଉଦ୍ୟମରେ ସହଯୋଗ କରିବ ବୋଲି କୁହାଗଲା । ସଶସ୍ତ୍ର ଯୁଦ୍ଧ ସାହାଯ୍ୟର ପ୍ରତିଶ୍ରୁତିକୁ ଗାନ୍ଧିଜୀ ବିରୋଧ କଲେ । ସୁତରାଂ କଂଗ୍ରେସ ସଭାପତି ମୌଲାନା ଆଜାଦ୍‌ଙ୍କୁ ରାଜେନ୍ଦ୍ର ପ୍ରସାଦ ଇସ୍ତଫା ପତ୍ର ଦେଇଦେଲେ ।

ବଡ଼ଲାଟ ଲିନ୍‌ଲିଥ୍‌ଗୋ ଅଗଷ୍ଟ ୮ ତାରିଖରେ ଯୁଦ୍ଧ ଉପଦେଷ୍ଟା କମିଟିରେ ଭାରତୀୟ ପ୍ରତିନିଧିମାନଙ୍କୁ ନେବାକୁ ନିର୍ଦ୍ଦେଶ ଦେଇଥିଲେ । ମନ୍ତ୍ରିମଣ୍ଡଳ ଗଠନ ପ୍ରସ୍ତାବକୁ ସେ ଗ୍ରହଣ କରି ନ ଥିଲେ । ପଣ୍ଡିତ ଜବାହର-ଲାଲ ବଡଲାଟଙ୍କର ଗୃହକର୍ତ୍ତା ସୁଲଭ ମନୋଭାବର ତୀବ୍ର ସମାଲୋଚନା କରିଥିଲେ । କଂଗ୍ରେସ ସରକାରୀ ଯୁଦ୍ଧ ପ୍ରସ୍ତୁତିକୁ ବିରୋଧ କି ସହଯୋଗ କରୁ ନ ଥିଲା । ବିପର୍ଯ୍ୟସ୍ତ କଂଗ୍ରେସ ସଙ୍ଗଠନକୁ କାର୍ଯ୍ୟଦକ୍ଷ କରିବା ପାଇଁ ଗାନ୍ଧିଜୀ ମନୋନିବେଶ କଲେ । ସେ ବଡ଼ଲାଟଙ୍କୁ ପରିସ୍ଥିତି ସଂକ୍ରାନ୍ତରେ ଚିଠି ଲେଖିଲେ । ପ୍ରତିରକ୍ଷା ଉଦ୍ୟମରେ ସରକାରଙ୍କ ସହିତ ସହଯୋଗ କରିବାକୁ ବଡ଼ଲାଟଙ୍କ ପ୍ରସ୍ତାବକୁ କଂଗ୍ରେସ ସଭାପତି ମୌଲାନା ଆଜାଦ୍ ଗ୍ରହଣ କଲେ ନାହିଁ, ବଡ଼ଲାଟଙ୍କ ନିକଟକୁ ଗାନ୍ଧିଜୀଙ୍କ ଚିଠି ବିଷୟରେ କଂଗ୍ରେସ ମହଲରେ ଅସନ୍ତୋଷ ପ୍ରକାଶ ପାଇଲା । ତେଣୁ ବ୍ୟକ୍ତିଗତ ଭାବରେ

ଆଇନ ଅମାନ୍ୟ କରି ଜେଲ୍ ବରଣ କରିବାର ନୀତି ଧାର୍ଯ୍ୟ ହେଲା । ଏଥିର ପ୍ରଥମ ସତ୍ୟାଗ୍ରହୀ ହେଲେ ବିନୋବା ଭାବେ; ତାଙ୍କପରେ ଜବାହରଲାଲ । ଏହିପରି ସାରା ଭାରତରୁ ୩୦ ହଜାର ସତ୍ୟାଗ୍ରହୀ ଜେଲ୍ ଗଲେ । ରାଜେନ୍ଦ୍ର ପ୍ରସାଦ ସ୍ୱାସ୍ଥ୍ୟ କାରଣରୁ ଏହି ସତ୍ୟାଗ୍ରହରେ ଯୋଗ ଦେଇ ନ ପାରିଲେ ମଧ୍ୟ ଉକ୍ତ କାର୍ଯ୍ୟକ୍ରମକୁ ସମର୍ଥନ କରୁଥିଲେ । ୧୯୪୧ ଡିସେମ୍ବରରେ କେତେକ ନେତାଙ୍କୁ ମୁକ୍ତ ଦିଆଗଲା । କିନ୍ତୁ ପ୍ରଥମ ଥର ପାଇଁ ଖବର କାଗଜରେ ସରକାରୀ କଟକଣା ଓ ଯାଞ୍ଚ ବ୍ୟବସ୍ଥା ରହିଲା ।

୧୯୪୧ ମସିହାରେ ଅକ୍ଷ ଶକ୍ତିର ଦୁଇ ମୁଖ୍ୟ ଅଂଶୀଦାର, ଜର୍ମାନୀ ଓ ସୋଭିଏତ୍ ରୁଷ ମଧ୍ୟରେ ମତଭେଦ ଘଟିଲା । ପର୍ଲ୍ ହାର୍ ବାର୍ ଉପରେ ବୋମା ମାଡ଼ ହେବାରୁ ନିଜରେ ନୀରବ ଥିବା ଜାପାନ ଓ ଆମେରିକା ଏହି ବିଶ୍ୱଯୁଦ୍ଧରେ ଯୋଗଦେଲେ । ଫଳରେ ସୋଭିଏତ୍ ରୁଷ ଏବଂ ଆମେରିକା ମିତ୍ରଶକ୍ତିରେ ଯୋଗଦେଲେ । ଅକ୍ଷଶକ୍ତିରେ ଜର୍ମାନୀ, ଇଟାଲି ସହିତ ଜାପାନ ଯୋଗଦେଲା । ଜାପାନ ନେତୃତ୍ୱରେ ବ୍ରିଟିଶ ଭାରତର ରେଙ୍ଗୁନ ଓ ସିଙ୍ଗାପୁର ଅଧିକୃତ ହେଲା । ରାଜନୈତିକ ଅଶାନ୍ତି ଦୂର ନ ହେଲେ ଭାରତରେ ପ୍ରତିରକ୍ଷା ସହଜସାଧ୍ୟ ନୁହେଁ; ତେଣୁ ବ୍ରିଟିଶ ସରକାର କ୍ରିପ୍ସ କମିଶନ୍‌ଙ୍କୁ ପଠାଇଲେ । କମିଶନ ବିଭିନ୍ନ ଭାରତୀୟ ନେତାମାନଙ୍କ ସହିତ ଆଲୋଚନା କଲେ । ରାଜେନ୍ଦ୍ର ପ୍ରସାଦ, ଜବାହରଲାଲ, କଂଗ୍ରେସ ସଭାପତି ମୌଲାନା ଆଜାଦ୍ ପ୍ରଭୃତି ନେତାମାନେ ମୁକ୍ତ ସଂଗ୍ରାମର ଦାବୀ ଉପସ୍ଥାପିତ କଲେ । ସାର୍ବଭୌମତା ପାଇଁ କଂଗ୍ରେସର ଦାବୀ ଏବଂ ମୁସଲିମ୍ ଲିଗ୍‌ର ପାକିସ୍ଥାନ ଦାବୀ ବିବାଦର ସମାଧାନ ପାଇଁ କମିଶନ ସମର୍ଥନ ହୋଇପାରି ନ ଥିଲେ । କମିଶନ ବିଫଳ ହେଲା । ଏଣେ ଭାରତର ପୂର୍ବ ସୀମାରେ ଯୁଦ୍ଧର ଘନଘଟା । ନେତାଜୀ ସୁଭାଷ ୧୯୪୧ ମସିହା ଜାନୁୟାରୀ ମାସରେ ବର୍ଲିନ୍‌କୁ ଖସି ଚାଲିଗଲେ । ସେଠାରୁ ସେ ବୁଡ଼ାଜାହାଜରେ ଜାପାନକୁ ଯାଇ 'ଆଜାଦ୍ ହିନ୍ଦ୍ ବାହିନୀ'କୁ ପୁନର୍ଗଠିତ କରି ଭାରତ ଆକ୍ରମଣ କଲେ । ଦେଶବାସୀଙ୍କୁ ମୁକ୍ତ ଆନ୍ଦୋଳନ ବିଷୟରେ ନେତାଜୀଙ୍କ ଉଦ୍‌ବୋଧନରେ ଦେଶବାସୀ ମାତି ଉଠିଲେ । ଏହି ଉତ୍ତେଜନା ମୂଳକ ପରିସ୍ଥିତିରେ ଗାନ୍ଧିଜୀ

୧୯୪୨ ମସିହା ଅଗଷ୍ଟ ୮ ତାରିଖରେ ଉଦ୍‌ବୋଧନ ଦେଲେ । ବମ୍ବେରେ ଅନୁଷ୍ଠିତ ନିଖିଳ ଭାରତ କଂଗ୍ରେସ କମିଟି ଅଧିବେଶନରେ ଭାରତର ମୁକ୍ତି ସଂଗ୍ରାମର ସେନାପତି ଗାନ୍ଧିଜୀ 'ଭାରତ ଛାଡ଼' ଡାକରା ଦେଲେ । ବ୍ରିଟିଶମାନେ ଭାରତ ଛାଡ଼ି ଚାଲିଯାଆନ୍ତୁ, ଭାରତୀୟମାନେ ନିଜେ ନିଜର ଦାୟିତ୍ୱ ନେବେ । ରାଜେନ୍ଦ୍ର ପ୍ରସାଦଙ୍କ ସମେତ ସବୁ କାର୍ଯ୍ୟକାରୀ କମିଟିର ନେତାମାନେ ସର୍ବସମ୍ମତିକ୍ରମେ ଗାନ୍ଧିଜୀଙ୍କ ପ୍ରସ୍ତାବକୁ ମାନିନେଲେ ।

ସରକାର ସବୁ ନେତାମାନଙ୍କୁ ଗିରଫ କରିନେଲେ । ଗାନ୍ଧିଜୀ ଦେଶବାସୀଙ୍କୁ 'କର ଅବା ମର' ଆହ୍ୱାନ ଦେଇ ଜେଲକୁ ଗଲେ । ମୁକ୍ତି-ଆନ୍ଦୋଳନ ପାଇଁ ଏହି ଅନ୍ତିମ ଆହ୍ୱାନ ଭାରତ ସାରା ଖେଳିଗଲା । ଜାଗ୍ରତ ଜନତା ଡାକଘରକୁ ଅଚଳ କରିବା, ରେଳପଥ ଭାଙ୍ଗିବା ଆଦି କାର୍ଯ୍ୟରେ ଲାଗିପଡ଼ିଲେ । ନେତୃତ୍ୱବିହୀନ ହୋଇ ଏହି ଆନ୍ଦୋଳନ ତୀବ୍ର ଭାବରେ ମାତି ଉଠିଲା । ଫଳରେ ଅହିଂସାର ଆନ୍ଦୋଳନ ହିଂସାତ୍ମକ ଆନ୍ଦୋଳନରେ ପରିଣତ ହେଲା । ସରକାର ଏହି ଆନ୍ଦୋଳନକୁ ସଂଯତ କରିବା ପାଇଁ ଗୁଳି ଚଳାଇଲେ । ପୋଲିସର ଦମନ କାର୍ଯ୍ୟ ଫଳରେ ଶହ ଶହ ଲୋକ ପ୍ରାଣ ହରାଇଲେ, ହଜାର ହଜାର ଲୋକ ଆହତ ହେଲେ, ଜେଲବରଣ କଲେ । ମେଦିନୀପୁରର ଦୁଇଟି ତହସିଲରେ ସରକାରୀ କଳକୁ ଅଚଳ କରିଦେଇ ଲୋକମାନେ ସ୍ୱାୟତ୍ତ ଶାସନ ପ୍ରତିଷ୍ଠା କଲେ । ରାଜେନ୍ଦ୍ର ପ୍ରସାଦ ସେତେବେଳକୁ ଜେଲରେ; ଭଗ୍ନ ଏବଂ ରୋଗାକ୍ରାନ୍ତ ଶରୀରରେ ସେ ଜେଲରେ ଥାଇ ମଧ୍ୟ ଗୋପନ ଆନ୍ଦୋଳନର ନେତୃତ୍ୱ ନେଉଥାନ୍ତି । ତାଙ୍କୁ ଅହମଦାବାଦ ଜେଲକୁ ନେବା ପାଇଁ ସରକାର ସ୍ଥିର କରିଥିଲେ ମଧ୍ୟ ସ୍ୱାସ୍ଥ୍ୟ କାରଣରୁ ସେ ବାଙ୍କିପୁର ଜେଲରେ ରହିଲେ । ଆୟୁର୍ବେଦ ଚିକିତ୍ସାର ସୁବିଧା ନ ପାଇ ସେ ଡାକ୍ତରୀ ଔଷଧ ଖାଇଲେ ଏବଂ ସୂତାକଟା ଓ ପଢ଼ା ଲେଖାରେ ସମୟ କାଟିଲେ ।

ସ୍ୱାସ୍ଥ୍ୟ କାରଣରୁ ସରକାର ରାଜେନ୍ଦ୍ର ପ୍ରସାଦଙ୍କୁ ଜେଲରୁ ଖଲାସ କରିଦେବାକୁ ଚାହିଁଲେ, କିନ୍ତୁ ଅନ୍ୟାନ୍ୟ ରାଜବନ୍ଦୀମାନେ ଖଲାସ ନ ହେବାଯାଏ ସେ ଖଲାସ ହେବାକୁ ଚାହାନ୍ତି ନାହିଁ ବୋଲି ସେ ଯୁକ୍ତି କଲେ ।

କାରାଜୀବନରେ ହିନ୍ଦୁ ମୁସଲମାନ ସାମ୍ପ୍ରଦାୟିକ ବିବାଦ ଉପରେ ସେ ବହି ଲେଖିଥିଲେ । ସେ ତାଙ୍କ ଆତ୍ମଜୀବନରେ ଖ୍ରୀ. ୧୯୪୬ ଶେଷ ସୁଦ୍ଧା ଜାତୀୟ ମୁକ୍ତି ଆନ୍ଦୋଳନର ଇତିହାସ ସବୁ ଲେଖିଥିଲେ । ଜେଲରେ ଥାଇ ସେ କସ୍ତୁରବା ଗାନ୍ଧିଙ୍କ ପରଲୋକ ଗମନ ବିଷୟ ଜାଣିଲେ । ଏହି ମାତୃସମାନ ମହିଳାଙ୍କ ତିରୋଧାନରେ ସେ ଦାରୁଣ ମର୍ମାହତ ହେଲେ । ସେତେବେଳେ ବିହାରରେ ମେଲେରିଆ ଜ୍ୱର ସାଙ୍ଘାତିକ ଭାବରେ ବ୍ୟାପିଗଲା । ସରକାରୀ ଅସାବଧାନତା ପାଇଁ ୧୯୪୩ ମସିହାରେ ବଙ୍ଗ ପ୍ରଦେଶରେ ଦୁର୍ଭିକ୍ଷର କରାଳରୂପ ପ୍ରକାଶ ପାଇଲା । ରାଜେନ୍ଦ୍ର ପ୍ରସାଦ ଏହି ଉଦ୍‌ବେଗଜନକ ପରିସ୍ଥିତିରେ ରକ୍ତହୀନତା ଓ ରକ୍ତଚାପ ରୋଗରେ ଆକ୍ରାନ୍ତ ହେଲେ । ତାଙ୍କୁ ୧୯୪୪ ମସିହା ମେ ୫ ତାରିଖରେ ଜେଲରୁ ଖଲାସ କରିଦିଆଗଲା ।

ଭାରତର ରାଜନୈତିକ ପରିସ୍ଥିତି ଆଲୋଚନା କରିବା ପାଇଁ ବଡ଼ଲାଟଙ୍କ ନିମନ୍ତ୍ରଣକୁ ଗାନ୍ଧିଜୀ ଅସ୍ୱୀକାର କରିଥାନ୍ତି । ସେ ଜିନ୍ନାଙ୍କ ସହିତ ବମ୍ବେରେ ଜାତୀୟସଙ୍କଟ ବିଷୟରେ ଚର୍ଚ୍ଚା କଲେ; କିନ୍ତୁ ଏ ଆଲୋଚନା ସଫଳ ହେଲା ନାହିଁ । ଖ୍ରୀ. ୧୯୪୦ ମେ ୭ ତାରିଖରେ ଜର୍ମାନୀ ବିଶ୍ୱଯୁଦ୍ଧରେ ପରାଜିତ ହେଲା; କିନ୍ତୁ ଜାପାନୀ ଆକ୍ରମଣ ସେ ପର୍ଯ୍ୟନ୍ତ ଅବ୍ୟାହତ ଥାଏ । ଜୁନ ୫ ତାରିଖରେ ବଡ଼ଲାଟ ଓ୍ୱାଭେଲ ଘୋଷଣା କଲେ ଯେ, ଭାରତୀୟମାନେ ଭାରତ ଶାସନ ପାଇଁ ସମ୍ବିଧାନ ପ୍ରସ୍ତୁତ କରିବେ । ଓ୍ୱାଭେଲ ବଡ଼ଲାଟଙ୍କ ପରାମର୍ଶଦାତା କମିଟିର ପୁନର୍ଗଠନ ପାଇଁ ଉଦ୍ୟମ କଲେ । ରାଜବନ୍ଦୀମାନେ ଖଲାସ ହେଲେ ଏବଂ ସିମଲାରେ ସର୍ବଦଳୀୟ ସମ୍ମିଳନୀରେ ବଡ଼ଲାଟଙ୍କ ଘୋଷଣା ବିଷୟରେ ବିଚାର ଓ ପରାମର୍ଶ ଚାଲିଲା । ରାଜେନ୍ଦ୍ର ପ୍ରସାଦ ଏହି ସମ୍ମିଳନୀରେ ଯୋଗ ଦେଇଥିଲେ । ମୁସଲିମ୍ ଲିଗ୍‌ର ଅନୁମତି ବିନା କେହି ମୁସଲମାନ ସଦସ୍ୟ ବଡ଼ଲାଟଙ୍କ ପରାମର୍ଶଦାତା କମିଟିରେ ଯୋଗଦେଇ ପାରିବେ ନାହିଁ ବୋଲି ଜିନ୍ନା ଅଡ଼ି ବସିଲେ । ୧୯୪୫ ମସିହା ଜୁଲାଇ ମାସରେ ବିଲାତରେ ଜାତିଦଳ ପରିବର୍ତ୍ତେ ଅଟ୍‌ଲିଙ୍କ ନେତୃତ୍ୱରେ ଶ୍ରମିକଦଳ ଶାସନ ଦାୟିତ୍ୱ ନେଲେ । ଉଦାରବାଦୀ ପ୍ରଧାନମନ୍ତ୍ରୀ ଅଟ୍‌ଲି ଭାରତର ସମ୍ବିଧାନ ତିଆରି ପାଇଁ କମିଟି ଗଠନ କଲେ । ଏହାଛଡ଼ା କେନ୍ଦ୍ର ଶାସନ ଓ ରାଜ୍ୟ ଶାସନ ପାଇଁ ନିର୍ବାଚନ କରାଇଲେ । ୧୯୪୬ ମସିହା

ଜାନୁୟାରୀ ଶେଷ ସୁଦ୍ଧା ନିର୍ବାଚନ ସରିଗଲା । କଂଗ୍ରେସ କେନ୍ଦ୍ରରେ ୫୭ଟି ଏବଂ ରାଜ୍ୟମାନଙ୍କରେ ୯୩୦ଟି ସ୍ଥାନ ଲାଭ କରି ଶତକଡ଼ା ୯୧ ସ୍ଥାନରେ ବିଜୟୀ ହେଲା । ମୁସଲିମ୍ ଲିଗ୍ କେନ୍ଦ୍ରରେ ୩୦ ଓ. ବିଧାନସଭାମାନଙ୍କରେ ୪୨୭ଟି ସ୍ଥାନ ପାଇଲା । ୮ଟି ପ୍ରଦେଶରେ କଂଗ୍ରେସ ମନ୍ତ୍ରିମଣ୍ଡଳ ଗଠିତ ହେଲା । ପଞ୍ଜାବରେ ମିଳିତ ମନ୍ତ୍ରିମଣ୍ଡଳ, ବଙ୍ଗ ଓ ସିନ୍ଧୁପ୍ରଦେଶରେ ମୁସ୍‌ଲିମ୍ ଲିଗ୍ ମନ୍ତ୍ରିମଣ୍ଡଳ ଗଠିତ ହେଲା ।

ଖ୍ରୀ. ୧୯୪୬ ଜାନୁୟାରୀରେ ବିଲାତ ସରକାର ଭାରତକୁ ଏକ ସଂସଦୀୟ ପ୍ରତିନିଧି ଦଳ ପଠାଇଲେ । ଏହି ଦଳ ଭାରତରେ ସର୍ବତ୍ର ବିଲାତି-ବିରୋଧୀ ମନୋଭାବ ଲକ୍ଷ୍ୟ କଲେ । ଭାରତର ରାଜନୈତିକ ପରିସ୍ଥିତି ବିଷୟରେ ସେମାନେ ବ୍ରିଟିଶ ସରକାରଙ୍କୁ ଜଣାଇଲେ । ତେଣୁ ବ୍ରିଟିଶ ସରକାର ଉଚ୍ଚ କ୍ଷମତାସମ୍ପନ୍ନ କ୍ୟାବିନେଟ୍ ମିଶନ ଭାରତକୁ ପଠାଇଲେ । କ୍ରିପସ୍, ଲରେନ୍‌ସ ଏବଂ ଆଲେକ୍‌ଜାଣ୍ଡର, ଏହି ତିନି ମନ୍ତ୍ରୀ ଭାରତକୁ ଆସି ରାଜନୈତିକ ସମାଧାନ ପାଇଁ ଉଦ୍ୟମ କଲେ; କିନ୍ତୁ କୌଣସି ସମାଧାନ ସମ୍ଭବ ନ ହେବାରୁ ସେମାନେ ନିଜ ତରଫରୁ ଏକ ଯୋଜନା ପ୍ରକାଶ କଲେ । କ୍ୟାବିନେଟ୍ ମିଶନର ଉକ୍ତ ଯୋଜନାରେ 'ପାକିସ୍ଥାନ' ଗଠନର ବ୍ୟବସ୍ଥା ନ ଥାଇ ସାରା ଭାରତ ପାଇଁ ଏକ କେନ୍ଦ୍ର ଶାସନର ବ୍ୟବସ୍ଥା ଥିଲା । ସାମ୍ପ୍ରଦାୟିକ ପ୍ରତିନିଧିତ୍ୱ ସ୍ୱୀକାର କରିନେଇ କ୍ୟାବିନେଟ ମିଶନ୍ କେବଳ ବୈଦେଶିକ ବ୍ୟାପାର, ଦେଶରକ୍ଷା ଏବଂ ପରିବହନର ଦାୟିତ୍ୱ କେନ୍ଦ୍ର ଶାସନକୁ ଦେଇଥିଲେ । ଅନ୍ୟ ସମସ୍ତ କ୍ଷମତା ପ୍ରଦେଶମାନଙ୍କୁ ବାଣ୍ଟି ଦିଆଯାଇଥିଲା ।

ପ୍ରାଦେଶିକ ସ୍ୱାତନ୍ତ୍ର୍ୟ ନାମରେ ଏବଂ କ୍ଷମତାର ବିକେନ୍ଦ୍ରୀକରଣ ନାମରେ ଭାରତୀୟ ଜନ ଜୀବନରେ ବିଭେଦର ସୃଷ୍ଟି ପାଇଁ ଏପରି ବ୍ୟବସ୍ଥା ହୋଇଛି ବୋଲି କହି ରାଜେନ୍ଦ୍ର ପ୍ରସାଦ ଏହି ଯୋଜନାର ତୀବ୍ର ବିରୋଧ କରିଥିଲେ । ସେ କହିଲେ ଯେ, ପରୋକ୍ଷଭାବରେ ପାକିସ୍ଥାନ ଗଠନ ପାଇଁ ବ୍ୟବସ୍ଥା ଏହି ଯୋଜନା ଭିତରେ ରହିଛି । ଏସବୁ ସତ୍ତ୍ୱେ କଂଗ୍ରେସ ଓ ମୁସଲିମ ଲିଗ୍‌ର ସଭ୍ୟମାନଙ୍କୁ ନେଇ ମଧ୍ୟବର୍ତ୍ତୀକାଳୀନ ବ୍ୟବସ୍ଥା ରୂପେ

ବଡ଼ଲାଟ ତାଙ୍କର ପରାମର୍ଶଦାତା କମିଟିର ପୁନର୍ଗଠନ କରିବା ପାଇଁ ଚାହିଁଲେ । ଏଥିପାଇଁ ଦଶ ଜଣ ସଭ୍ୟଙ୍କ ଭିତରୁ କଂଗ୍ରେସ ଭିତରୁ ସେ ଜବାହରଲାଲ, ସର୍ଦ୍ଦାର ପଟେଲ, ରାଜେନ୍ଦ୍ର ପ୍ରସାଦ, ରାଜାଜୀ ଏବଂ ମହତାବଙ୍କୁ ବଡ଼ଲାଟଙ୍କ ପରାମର୍ଶଦାତା କମିଟିର ସଭ୍ୟ ମନୋନୀତ କରି ଦାୟିତ୍ୱ ନେବା ପାଇଁ ଆମନ୍ତ୍ରଣ କଲେ । ଅନ୍ୟ ପାଞ୍ଚଜଣ ମୁସଲିମ୍ ଲିଗ୍‌ର ସଭ୍ୟଙ୍କ ଦଳୀୟ ନିର୍ଦ୍ଦେଶରେ କଂଗ୍ରେସ ନେତାମାନେ ଏହି ଦାୟିତ୍ୱ ନେବାକୁ ଅସ୍ୱୀକାର କରିଥିଲେ । ଫଳରେ ସରକାରୀ ଅମଲମାନଙ୍କୁ ନେଇ ଏହି ମଧ୍ୟବର୍ତ୍ତୀକାଳୀନ ସରକାର ଗଠିତ ହେଲା । ପରେ ବଙ୍ଗପ୍ରଦେଶରେ ସାମ୍ପ୍ରଦାୟିକ ବିଦ୍ରୋହରେ ଶହ ଶହ ଲୋକ ମଲେ । ବିଶେଷ କରି ବଙ୍ଗପ୍ରଦେଶର ନୂଆଖାଲି ଅଞ୍ଚଳରେ ଏହି ଗୋଳମାଳ ସାଙ୍ଘାତିକ ହୋଇଗଲା । ଅବସ୍ଥା ଆୟତ୍ତ କରିବା ପାଇଁ ଏବଂ ଏକ ସ୍ଥାୟୀ ରାଜନୈତିକ ସମାଧାନ ପାଇଁ ବଡ଼ଲାଟ ଗାନ୍ଧିଜୀ ଓ ଜିନ୍ନାଙ୍କୁ ଏକ ଆପୋଷମୂଳକ ନିଷ୍ପତ୍ତି ପାଇଁ ନିବେଦନ କଲେ । ଜବାହରଲାଲ ୧୨ ଜଣ କଂଗ୍ରେସ ସଭ୍ୟଙ୍କର ନାମ ସମ୍ବଳିତ ଏକ ତାଲିକା ବଡ଼ଲାଟଙ୍କୁ ଦେଲେ । ମୁସ୍‌ଲିମ ଲିଗ୍ ଏହି ସରକାର ଗଠନରେ ସାହାଯ୍ୟ କରିବ ନାହିଁ ବୋଲି ଜଣାଇଦେଲା ।

ତେଣୁ ବଡଲାଟ ୧୯୦୬ ମସିହା ସେପ୍‌ଟେମ୍ବର ୨ ତାରିଖରେ କଂଗ୍ରେସର ବାର ଜଣ ସଭ୍ୟଙ୍କୁ ବଡ଼ଲାଟଙ୍କ ପରାମର୍ଶଦାତା କମିଟିରେ ସଦସ୍ୟ ପଦରେ ନିଯୁକ୍ତ କଲେ । ଏହି କମିଟିର ସଭାପତି ସ୍ୱୟଂ ବଡ଼ଲାଟ ଏବଂ ଉପସଭାପତି ପଣ୍ଡିତ ଜବାହରଲାଲ ନେହେରୁ ରହିଲେ । ଉକ୍ତ କମିଟିର ସଭ୍ୟମାନଙ୍କୁ ବିଭିନ୍ନ ବିଭାଗର ଦାୟିତ୍ୱ ଦିଆଗଲା । ରାଜେନ୍ଦ୍ର ପ୍ରସାଦ ଖାଦ୍ୟ ଓ କୃଷି ବିଭାଗର ଦାୟିତ୍ୱ ବହନ କଲେ । ପରେ ପରେ ଜିନ୍ନା ଓ ନେହେରୁଙ୍କ ମଧ୍ୟରେ ଆପୋଷ ସମାଧାନ ଫଳରେ ମୁସ୍‌ଲିମ୍ ଲିଗ୍‌ର ପ୍ରତିନିଧିମାନେ ମଧ୍ୟ ଉକ୍ତ ପରାମର୍ଶଦାତା କମିଟିରେ ସଭ୍ୟପଦ ଗ୍ରହଣ କଲେ । ବାସ୍ତବରେ ଏହା ଏକ ମିଳିତ ମନ୍ତ୍ରିମଣ୍ଡଳ ହିସାବରେ ଶାସନ ପରିଚାଳନା କଲେ ।

ତଥାପି ରାଜନୈତିକ ଅକ୍ରିୟତା ଦୂରୀଭୂତ ହେଲା ନାହିଁ । ବଙ୍ଗ ପ୍ରଦେଶରୁ ସାମ୍ପ୍ରଦାୟିକତାର ଦୁର୍ଘଟଣା ବିହାର ପ୍ରଦେଶକୁ ସଂକ୍ରମିତ ହେଲା । ଅବସ୍ଥା ଅସମ୍ଭାଳ ବୋଲି ହୃଦ୍‌ବୋଧ କରି ବ୍ରିଟିଶ ଶ୍ରମିକଦଳର ସମାଜବାଦୀ ପ୍ରଧାନମନ୍ତ୍ରୀ ଲର୍ଡ଼ ଅଟ୍‌ଲି ଖ୍ରୀ. ୧୯୪୭ ଫେବୃଆରୀ ୨୦ ତାରିଖରେ ଏକ ଐତିହାସିକ ଘୋଷଣା କଲେ । ପ୍ରଧାନମନ୍ତ୍ରୀ କହିଲେ ଯେ ୧୯୪୮ ମସିହା ଜୁନ୍ ୩୦ ତାରିଖ ସୁଦ୍ଧା ଭାରତୀୟମାନଙ୍କୁ ଶାସନ କ୍ଷମତା ଶାନ୍ତିପୂର୍ଣ୍ଣ ଭାବରେ ହସ୍ତାନ୍ତର କରି ବ୍ରିଟିଶ ରାଜଶକ୍ତି ଭାରତ ଦାୟିତ୍ୱରୁ ଅପସରି ଯିବ । ପୂର୍ବତନ ଯୁଦ୍ଧକାଳୀନ ପ୍ରଧାନମନ୍ତ୍ରୀ ଏବଂ ଜାତିଦଳର ବିଶିଷ୍ଟ ନେତା ସାର ଉଇନଷ୍ଟନ୍ ଚର୍ଚ୍ଚିଲ ଏ ପ୍ରସ୍ତାବର ଘୋର ବିରୋଧ କଲେ ମଧ୍ୟ ଅଟ୍‌ଲି ତାଙ୍କ ଘୋଷଣାରେ ଅଟଳ ରହିଲେ । ଖ୍ରୀ. ୧୯୪୭ ମାର୍ଚ୍ଚ ୨୩ ତାରିଖ ଦିନ ଲର୍ଡ଼ ମାଉଣ୍ଟବ୍ୟାଟେନ ଭାରତକୁ ନୂତନ ବଡ଼ଲାଟ ହୋଇ ଆସିଲେ । ସେତେବେଳେ ମଧ୍ୟ ଭାରତରେ ଘୋର ଅଶାନ୍ତି ଓ ଉପଦ୍ରବ ଲାଗି ରହିଥିଲା । ଖ୍ରୀ. ୧୯୪୬ ଅଗଷ୍ଟ ୧୫ ତାରିଖରେ ଜାପାନ ଆତ୍ମସମର୍ପଣ କରିବା ଦ୍ୱାରା ଭାରତର ପୂର୍ବ ସୀମାନ୍ତରେ ଯୁଦ୍ଧ ଘନଘଟାର ଅବସାନ ଘଟିଥାଏ । ଏତଦ୍ୱାରା ଦ୍ୱିତୀୟ ବିଶ୍ୱଯୁଦ୍ଧ ସମାପ୍ତ ହୋଇଯାଇଥିଲେ ମଧ୍ୟ ଯୁଦ୍ଧୋତ୍ତର ପ୍ରତିକ୍ରିୟା ଦେଶସାରା ସର୍ବତ୍ର ସ୍ପଷ୍ଟ ହୋଇ ଯାଇଥାଏ । କ୍ଷମତାଜନିତ ଗୋଷ୍ଠୀଗତ ବିଦ୍ୱେଷ ମଧ୍ୟ ବହୁ ଜନସେବୀଙ୍କ ମନରେ ଥାଏ । ସୁଚତୁର ପ୍ରଶାସକ ଏବଂ ଦ୍ୱିତୀୟ ବିଶ୍ୱଯୁଦ୍ଧରେ ବର୍ମ୍ମାଦେଶ ସୀମାନ୍ତର ସେନାପତି ଲର୍ଡ଼ ମାଉଣ୍ଟ୍ ବ୍ୟାଟେନ୍ ସବୁ ଦଳର ନେତାମାନଙ୍କୁ ଆପଣାର କରିନେଲେ । ସେ ୧୯୪୭ ମସିହା ଅଗଷ୍ଟ ୧୫ ତାରିଖ ଦିନ ଦ୍ୱିତୀୟ ବିଶ୍ୱଯୁଦ୍ଧ ଅବସାନ ପ୍ରଥମ ବାର୍ଷିକୀ ଶୁଭ ଦିବସରେ ଭାରତୀୟମାନଙ୍କୁ ସ୍ୱାଧୀନତା ହସ୍ତାନ୍ତର କରି ଦେବାକୁ ବଦ୍ଧପରିକର ଥିଲେ ।

ମୁସଲମାନମାନଙ୍କର ସ୍ୱତନ୍ତ୍ର ଦେଶ 'ପାକିସ୍ଥାନ' ଗଠନ ପାଇଁ ସେ ଭାରତୀୟ ନେତାମାନଙ୍କୁ ପ୍ରବର୍ତ୍ତାଇଲେ । ପଣ୍ଡିତ ଜବାହରଲାଲ, ସର୍ଦ୍ଦାର ବଲ୍ଲଭଭାଇ ପଟେଲ, ରାଜଗୋପାଳାଚାରୀ ଓ ରାଜେନ୍ଦ୍ର ପ୍ରସାଦ ପ୍ରମୁଖ ନେତାମାନେ ଏଥିରେ ରାଜି ହୋଇଗଲେ । ୧୯୪୭ ମସିହା ଜୁନ୍

୧୪ ତାରିଖରେ ଗୋବିନ୍ଦବଲ୍ଲଭ ପନ୍ଥଙ୍କର ସ୍ୱତନ୍ତ୍ର ପାକିସ୍ଥାନ ଗଠନ ପ୍ରସ୍ତାବକୁ ନିଖିଳ ଭାରତ କଂଗ୍ରେସ କମିଟି ସଂଖ୍ୟାଗରିଷ୍ଠ ଭୋଟରେ ଅନୁମୋଦନ କଲେ । ବ୍ରିଟିଶ ରାଜକର୍ମଚାରୀମାନଙ୍କ ପ୍ରତି ଆନ୍ଦୋଳନକାଳୀନ କାର୍ଯ୍ୟାବଳୀ ନେଇ ପ୍ରତିଶୋଧମୂଳକ ଦଣ୍ଡବିଧାନ କରାଯିବ ନାହିଁ, କର୍ମଚାରୀମାନଙ୍କର ଯଥାରୀତି ଭତ୍ତା ମିଳିବ, ଆଦି ବହୁ ବିଷୟ ଆପୋଷରେ ତୁଟିଗଲା ପରେ ବ୍ରିଟିଶ ସରକାରଙ୍କ ଦ୍ୱାରା ଆଗତ 'ଭାରତୀୟ ସ୍ୱାଧୀନତା ଆଇନ' ବ୍ରିଟିଶ ପାର୍ଲିଆମେଣ୍ଟରେ ୧୯୪୭ ମସିହା ଜୁଲାଇ ମାସରେ ଗୃହୀତ ହୋଇଗଲା । ଏହା ପରେ ପରେ ବଡ଼ଲାଟ ମାଉଣ୍ଟ୍ ବ୍ୟାଟେନଙ୍କ ଅଧ୍ୟକ୍ଷତାରେ ବିଭାଜନ କାଉନ୍‌ସିଲ୍ ଗଠିତ ହେଲା । କଂଗ୍ରେସ ପକ୍ଷରୁ ସର୍ଦ୍ଦାର ପଟେଲ ଓ ରାଜେନ୍ଦ୍ର ପ୍ରସାଦ ଏବଂ ମୁସଲିମ୍ ଲିଗ୍ ପକ୍ଷରୁ ମହମ୍ମଦ ଅଲ୍ଲୀ ଜିନ୍ନା ଏବଂ ନବାବ୍ ଲିଆକତ୍ ଅଲ୍ଲି ଖାଁ । ଏହି କାଉନ୍‌ସିଲରେ ସଭ୍ୟ ରହିଲେ । ରାଡକ୍ଲିଫଙ୍କ ପରାମର୍ଶକୁ ଗ୍ରହଣ କରାଯାଇ ଭାରତର ମୁସଲମାନ ବହୁଳ ଅଞ୍ଚଳକୁ ନେଇ ୧୯୪୭ ମସିହା ଅଗଷ୍ଟ ୧୪ ତାରିଖ ଦିନ ପାକିସ୍ଥାନ ଗଠିତ ହେଲା । ମହମଦ ଅଲ୍ଲୀ ଜିନ୍ନା ପାକିସ୍ଥାନର ପ୍ରଥମ ଗଭର୍ଣ୍ଣର ଜେନେରାଲ୍ (ବଡ଼ଲାଟ) ହେଲେ । ଭାରତବର୍ଷର ଅବଶିଷ୍ଟ ବିସ୍ତୃତ ଅଞ୍ଚଳକୁ ନେଇ ୧୯୪୭ ମସିହା ଅଗଷ୍ଟ ୧୫ ତାରିଖ ଦିନ ଭାରତର ସ୍ୱାଧୀନତା ଘୋଷିତ ହେଲା । ଲର୍ଡ୍ ମାଉଣ୍ଟ ବ୍ୟାଟେନ ସ୍ୱାଧୀନ ଭାରତର ପ୍ରଥମ ବଡ଼ଲାଟ ହେଲେ ଏବଂ ଏହି ଦିନଠାରୁ 'ଭାରତୀୟ ସ୍ୱାଧୀନତା ଆଇନ' ଅନୁଯାୟୀ ପଣ୍ଡିତ ଜବାହରଲାଲ ନେହେରୁ ପ୍ରଥମ ପ୍ରଧାନମନ୍ତ୍ରୀ ହେଲେ । ଉଭୟ ଦେଶ ମଧ୍ୟରେ ଧନସମ୍ପତ୍ତି ବଣ୍ଟନରେ ରାଜେନ୍ଦ୍ର ପ୍ରସାଦ ଆଇନଜ୍ଞ ହିସାବରେ ବହୁତ କାର୍ଯ୍ୟ କରିଥିଲେ ।

କେନ୍ଦ୍ର ବିଧାନସଭା ଏବଂ ରାଜ୍ୟମାନଙ୍କର ପ୍ରତିନିଧିମାନଙ୍କୁ ନେଇ ଗଠିତ ଭାରତୀୟ ସମ୍ବିଧାନ ସଭାର ଅଧ୍ୟକ୍ଷ ଥିଲେ ରାଜେନ୍ଦ ପ୍ରସାଦ । ସମ୍ବିଧାନ ସଭାରେ ମୁସ୍‌ଲିମ୍ ଏବଂ ରାଜନ୍ୟ ପରିଷଦ ସହଯୋଗ କରୁ ନ ଥିବାରୁ ଏବଂ ବ୍ରିଟିଶ ସରକାର ହସ୍ତକ୍ଷେପ କରିବାକୁ ଚାହୁଁଥିବାରୁ ରାଜେନ୍ଦ୍ର ପ୍ରସାଦ ତାର ବିରୋଧ କରିଥିଲେ । ୧୯୪୬ ମସିହା ଜୁଲାଇ ମାସରେ ସଭ୍ୟ

ମୁସ୍‌ଲିମ୍ ଲିଗ୍ ପ୍ରଥମରୁ ସହଯୋଗ କରୁଥିଲେ ମଧ୍ୟ ପରବର୍ତ୍ତୀ ସମୟରେ ସହଯୋଗ କଲି ନାହିଁ । ସେହି ବର୍ଷ ନଭେମ୍ବର ମାସରେ ବଡ଼ଲାଟ ସହଯୋଗ ପାଇଁ ମୁସ୍‌ଲିମ୍ ଲିଗ୍‌କୁ ନିବେଦନ କରିଥିଲେ । ତାହା ସେମାନେ ଗ୍ରହଣ ନ କରିବାରୁ ଡ଼ିସେମ୍ବର ୯ ତାରିଖରେ ସମ୍ବିଧାନ ସଭାରେ ଉପସ୍ଥିତ ସଭ୍ୟମାନେ ଡକ୍ଟର ଆମ୍ବେଦକରଙ୍କ ଅଧ୍ୟକ୍ଷତାରେ ଶିକ୍ଷା ସମ୍ବିଧାନ କମିଟି ନିଯୁକ୍ତ କଲେ । ଏହି ଅଧିବେଶନରେ ରାଜେନ୍ଦ୍ର ପ୍ରସାଦ ସମ୍ବିଧାନ ସଭାର ବାଚସ୍ପତି ଭାବରେ ନିର୍ବାଚିତ ହୋଇଥିଲେ । ତାଙ୍କୁ ନମ୍ରତାର ମୂର୍ତ୍ତି ମନ୍ତ୍ର ପ୍ରତୀକ ଏବଂ ଭାରତୀୟ ଆତ୍ମାର ପ୍ରତିଫଳିତ ବ୍ୟକ୍ତିତ୍ୱ ବୋଲି ଦାର୍ଶନିକ ରାଧାକୃଷ୍ଣନ କହିଥିଲେ । ୧୯୪୭ ମସିହା ଅଗଷ୍ଟ ୧୫ ପରଠାରୁ ସମ୍ବିଧାନ ସଭାର କାର୍ଯ୍ୟ ସୁରୁରୂପେ ଚାଲିଲା । ବାଧା ଦେଉଥିବା ମୁସ୍‌ଲିମ୍ ଲିଗ୍ ପାକିସ୍ଥାନ ଗଠନ ହେଲାପରେ ସେମାନଙ୍କର ଶାସନ ଦାୟିତ୍ୱ ନେଲେ ।

ମୋଗଲବନ୍ଦୀ-ଭାରତ ସିନା ଭାରତ-ଶାସନାଧୀନ ହେଲା; କିନ୍ତୁ ପାଞ୍ଚଶହରୁ ଅଧିକ ଗଡ଼ଜାତ ରାଜାମାନେ ସର୍ବଭୌମତା ଦାବୀ କରି ବସିଲେ । କାଶ୍ମୀର ଗଡ଼ଜାତକୁ ପାକିସ୍ଥାନ ଆକ୍ରମଣ କରିବାରୁ କାଶ୍ମୀର ରାଜା ଭାରତ ସହିତ କାଶ୍ମୀରର ମିଶ୍ରଣ ଚୁକ୍ତି କରିଦେଲେ । ସେହିପରି ହାଇଦ୍ରାବାଦର ନିଜାମ ପାକିସ୍ଥାନ ସହିତ ହାଇଦ୍ରାବାଦକୁ ମିଶାଇବାକୁ ଚାହିଁଲେ; କିନ୍ତୁ ସେଠାର ଲୋକେ ଏଥିରେ ରାଜି ନ ହେବାରୁ ନିଜାମଙ୍କ 'ରାଜକର' ଦଳ ପ୍ରଜାମାନଙ୍କ ଉପରେ ନିର୍ମମ ଅତ୍ୟାଚାର ଆରମ୍ଭ କରିଦେଲେ । ସାଧାରଣ ଲୋକଙ୍କୁ ଅତ୍ୟାଚାରରୁ ରକ୍ଷା କରିବା ପାଇଁ ୧୯୪୮ ମସିହା ସେପ୍ଟେମ୍ବର ୧୬ ତାରିଖରେ ଭାରତ ସରକାର ହାଇଦ୍ରାବାଦକୁ ଦଖଲ କରିନେଲେ । ଠିକ୍ ତା ପୂର୍ବଦିନ ଜିନ୍ନାଙ୍କର ପରଲୋକ ଗମନ ହୋଇଥାଏ; କିନ୍ତୁ କାଶ୍ମୀରବାସୀ ପାକିସ୍ଥାନ ସହିତ ରହିବାକୁ ଚାହାନ୍ତି ବୋଲି ପାକିସ୍ଥାନ ସରକାର ଅଯଥା ଦାବୀ ଉଠାଇ ଯୁଦ୍ଧ ଅବ୍ୟାହତ ରଖିବାରୁ ବଡ଼ଲାଟ ଲର୍ଡ଼ ମାଉଣ୍ଟ୍ ବ୍ୟାଟେନ୍‌ଙ୍କ ପରାମର୍ଶ କ୍ରମେ ଭାରତ ସରକାର ଜାତିସଂଘ ନିକଟରେ ଫେରାଦ ହେଲେ । ସେ ବିବାଦ ଅଦ୍ୟାବଧି ଜାତିସଂଘରେ ପୂରାପୂରି ତୁଟି ନାହିଁ । ଏହି ପରିସ୍ଥିତି

ଭିତରେ ମଧ୍ୟବର୍ତ୍ତୀକାଳୀନ ମନ୍ତ୍ରିମଣ୍ଡଳର ଖାଦ୍ୟ ଓ କୃଷିମନ୍ତ୍ରୀ ରାଜେନ୍ଦ୍ର ପ୍ରସାଦ ବର୍ଦ୍ଧିଷ୍ଣୁ ଜନସଂଖ୍ୟାର ଖାଦ୍ୟାଭାବ ମେଣ୍ଟାଇବା ପାଇଁ ଏବଂ ଜାତୀୟ ଅର୍ଥନୀତିକୁ ବଳିଷ୍ଠ କରିବା ପାଇଁ ଲାଗିପଡ଼ିଲେ । ଦୁର୍ଭିକ୍ଷର ଆଶଙ୍କା ଏଡ଼ାଇବା ପାଇଁ ସେ ବିଦେଶରୁ ଖାଦ୍ୟଶସ୍ୟ ଆମଦାନୀ କଲେ ଏବଂ ସମଗ୍ର ଦେଶରେ କଣ୍ଟ୍ରୋଲ ବ୍ୟବସ୍ଥା ଚାଲୁ କଲେ । ଖାଦ୍ୟ-ଅଭ୍ୟାସ ବଦଳାଇବା ପାଇଁ ପୂର୍ବ ଓ ଦକ୍ଷିଣ ଭାରତର ଲୋକଙ୍କୁ ରୁଟି ଓ ମକାଛତୁ ଖାଇବାକୁ ଅନୁରୋଧ କରାଗଲା । ସେହିପରି ଗହମ ଅଭାବ ବେଳେ ଉତ୍ତର ଭାରତର ଲୋକେ ଭାତ ଖାଇବାକୁ ବାଧ୍ୟ ହେଲେ । ଅସାଧୁ ବ୍ୟବସାୟୀମାନେ ଏହି ଖାଦ୍ୟ ସଙ୍କଟରୁ ଅନ୍ୟାୟ ଭାବରେ ଲାଭ ଉଠାଇବାରୁ ରାଜେନ୍ଦ୍ର ପ୍ରସାଦ ଦୃଢ଼ ହସ୍ତରେ ସେମାନଙ୍କୁ ସଂଯତ କରିବାକୁ ଉଦ୍ୟମ କରିଥିଲେ । ଏହାଛଡ଼ା ଅଧିକ ଖାଦ୍ୟଶସ୍ୟ ଉତ୍ପାଦନ ପାଇଁ ସେ ବହୁ କାର୍ଯ୍ୟାନୁଷ୍ଠାନ ମଧ୍ୟ କରିଥିଲେ । ଖାଦ୍ୟ ସଙ୍କଟ ପରିସ୍ଥିତିର ଅନୁଧ୍ୟାନ ପାଇଁ ସେ ଠାକୁରଦାସ କମିଟି ନିଯୁକ୍ତ କରିଥିଲେ । ଏହି କମିଟିର ସୁପାରିଶ କ୍ରମେ ଖାଦ୍ୟଦ୍ରବ୍ୟ ଉପରୁ ନିୟନ୍ତ୍ରଣ ଉଠାଇ ନେଇ କ୍ରମେ କଣ୍ଟ୍ରୋଲ ବ୍ୟବସ୍ଥା ବନ୍ଦ କରିଦେବା ପାଇଁ ସେ ଆଦେଶ ଦେଲେ । କିନ୍ତୁ ରାଜ୍ୟ ରାଜ୍ୟ ଭିତରେ ଅବାଧ ବାଣିଜ୍ୟ ସଫଳ ହୋଇପାରିଲା ନାହିଁ । ଏହି ସ୍ୱଳ୍ପକାଳୀନ ଦାୟିତ୍ୱ ଭିତରେ ଖାଦ୍ୟ ସମସ୍ୟାର ପର୍ଯ୍ୟାଲୋଚନା କରି ସେ ଜଳସେଚନ ପାଇଁ ବ୍ୟବସ୍ଥା କରିଥିଲେ । ଭାରତର ଶତକଡ଼ା ୮୨ ଭାଗ ଜମିରେ ପ୍ରାକୃତିକ ବିପର୍ଯ୍ୟୟ ଲାଗି ରହିଥାଏ । କୂପ ଜଳସେଚନ ଓ ଉଠା ଜଳସେଚନ ଆଦି ସଙ୍ଗେ ସଙ୍ଗେ ଭଲ ବିହନ, ସାର ଏବଂ ଆଧୁନିକ ଯନ୍ତ୍ରପାତିର ପ୍ରୟୋଗରେ ଆଧୁନିକ କୃଷି ପାଇଁ ସେ ଜୋର ଦେଇଥିଲେ । ଜମିଦାରୀ ପ୍ରଥା ଲୋପ କରି ଭୂସଂସ୍କାର ଦ୍ୱାରା କୃଷି ବିକାଶ ପାଇଁ ମଧ୍ୟ ସେ ରାଜ୍ୟ ସରକାରମାନଙ୍କୁ ପରାମର୍ଶ ଦେଇଥିଲେ । ଏହାଛଡ଼ା ଗୋ ସମ୍ପଦର ଉନ୍ନତି ପାଇଁ ସେ ଅଧିକ ଦୃଷ୍ଟି ଦେଇଥିଲେ ।

ମନ୍ତ୍ରୀତ୍ୱ ଦାୟିତ୍ୱ ସହିତ ସେ ସମ୍ବିଧାନ ସଭାର ଅଧ୍ୟକ୍ଷ ଦାୟିତ୍ୱ ମଧ୍ୟ ତୁଲାଉଥିଲେ । ଭାରତରେ ବହୁମତ ଏବଂ ଆଦର୍ଶ ଥାଏ । କେତେକ ଜନ-ପ୍ରତିନିଧି ପଶ୍ଚିମାନୁକରଣ ପାଇଁ ଦାବୀ କରୁଥିଲେ ଓ ଆଉ କେତେକେ

ସଂସ୍କୃତିକରଣ ପାଇଁ ଦାବୀ କରୁଥିଲେ । କେନ୍ଦ୍ରମନ୍ତ୍ରୀ ରାଜେନ୍ଦ୍ର ପ୍ରସାଦ ଅଧ୍ୟକ୍ଷ ହିସାବରେ ଉଭୟ ମତକୁ ସ୍ୱୀକାର କରି ଏକ ସମାଧାନମୂଳକ ନୀତି ଗ୍ରହଣ କରୁଥିଲେ । ପାକିସ୍ଥାନ ବ୍ରିଟିଶ ଭାରତରୁ ଅଲଗା ହୋଇଯିବା ପରେ ଅବଶିଷ୍ଟାଂଶ ଭାରତର ନାମକରଣ ନେଇ ଘୋର ବିବାଦ ଉପସ୍ଥିତ ହେଲା । ଦଳେ ଏହାର ନାମ 'ଇଣ୍ଡିଆ' ରଖିବାକୁ ଦାବୀ କଲେ ଓ ଅନ୍ୟ ଦଳେ ଏହାର ନାମ ଭାରତ ରଖିବାକୁ ଚାହିଁଲେ । କେହି କାହା ଜିଦ୍ ଛାଡ଼ିବାକୁ ରାଜି ନ ଥିଲେ । ଶେଷକୁ ରାଜେନ୍ଦ୍ର ପ୍ରସାଦ ନିଷ୍ପତ୍ତି ଦେଲେ ଯେ ଏହି ଦେଶର ନାମ ଇଣ୍ଡିଆ ଅର୍ଥାତ୍ ଭାରତ । ସମ୍ବିଧାନରେ ମଧ୍ୟ ସେହିପରି ଭାବରେ ଏ ଦେଶର ନାମ ଲିପିବଦ୍ଧ ହୋଇଗଲା ।

ଓଡ଼ିଶାର ତତ୍କାଳୀନ ମୁଖ୍ୟମନ୍ତ୍ରୀ ହରେକୃଷ୍ଣ ମହତାବଙ୍କ ଉଦ୍ୟମରେ ସ୍ୱାଧୀନ ଭାରତରେ ଗଡ଼ଜାତଗୁଡ଼ିକୁ ଭାରତରେ ମିଶାଇଦେବା ପାଇଁ ଆନ୍ଦୋଳନ ଚାଲିଲା । ଖ୍ରୀ. ୧୯୩୯ରେ ମହତାବ ଗଡ଼ଜାତ ଅନୁସନ୍ଧାନ କମିଟିର ଅଧ୍ୟକ୍ଷ ଥିଲେ । ତାଙ୍କ ସହିତ ସଭ୍ୟ ଥିଲେ ଗୁଜୁରାଟର ନେତା ବଳବନ୍ତ ରାୟ ମେହେଟା ଏବଂ ଲାଲମୋହନ ପଟ୍ଟନାୟକ । ସେତିକବେଳେ ରାଜେନ୍ଦ୍ର ପ୍ରସାଦ ପୂର୍ବତନ ବିହାର-ଓଡ଼ିଶାର ନେତା ହିସାବରେ ନବଗଠିତ ଓଡ଼ିଶା ପ୍ରଦେଶର ନେତାମାନଙ୍କୁ ବ୍ୟକ୍ତିଗତ ଭାବରେ ଜାଣିଥିଲେ । ମହତାବ ତାଙ୍କର ଅତି ପରିଚିତ ରାଜନୈତିକ ସହଯୋଗୀ ଥିଲେ । ତେଣୁ ଓଡ଼ିଶାରେ ଗଡ଼ଜାତ ମିଶ୍ରଣ ଆନ୍ଦୋଳନରେ ସେ ମହତାବଙ୍କୁ ପରୋକ୍ଷ ସମର୍ଥନ ଦେଇଥିଲେ । ଶେଷକୁ ଓଡ଼ିଶା ସହିତ ଓଡ଼ିଶା ଗଡ଼ଜାତର ଚୂଡ଼ାନ୍ତ ମିଶ୍ରଣ ପାଇଁ ତତ୍କାଳୀନ କେନ୍ଦ୍ର ସ୍ୱରାଷ୍ଟ୍ରମନ୍ତ୍ରୀ ଲୌହମାନବ ସର୍ଦ୍ଦାର ପଟେଲ ପୌରୋହିତ୍ୟ କଲେ । ୧୯୪୭ ମସିହା ଡିସେମ୍ବର ୧୪ ତାରିଖ ଦିନ ଗଡ଼ଜାତ ମିଶ୍ରଣ ଚୁକ୍ତି କଟକରେ ସମ୍ପାଦିତ ହୋଇ ବିଶାଳ ଭାରତ ଗଠନ ଦିଗରେ ଏକ ନୂତନ ସରଣୀ ସୃଷ୍ଟିକଲା ।

ଭାରତ ଇତିହାସର ଏ ସନ୍ଧିକ୍ଷଣରେ ଇତିହାସର ଦ୍ରୁତ ପରିବର୍ତ୍ତନ ବେଳେ ଯେଉଁ ମୁଷ୍ଟିମେୟ ସ୍ୱାଧୀନତା ସଂଗ୍ରାମୀ ଏ ଦେଶ ଶାସନର ଦାୟିତ୍ୱ ନେଇ ଦେଶର ସ୍ୱାଧୀନତାକୁ ସୁରକ୍ଷିତ କରିଗଲେ, ରାଜେନ୍ଦ୍ର ପ୍ରସାଦ

ସେମାନଙ୍କ ମଧ୍ୟରେ ଅଗ୍ରଗଣ୍ୟ ଜନସେବୀ । ଭାରତ ଦ୍ୱିଖଣ୍ଡିତ ହେବାପରେ ସ୍ୱାଧୀନ ହେଲା । ତଥାପି ସାମ୍ପ୍ରଦାୟିକତା ଲୋପ ପାଇ ନ ଥିଲା । ରାଡ୍‌କ୍ଲିଫ୍ କମିଶନ୍‌ଙ୍କର ତରବରିଆ ଦେଶବିଭାଜନ ସାଙ୍ଗକୁ ପାକିସ୍ଥାନର ଧର୍ମାନ୍ଧତା ଫଳରେ ଭାରତକୁ ହଜାର ହଜାର ସଂଖ୍ୟାରେ ଆଶ୍ରୟପ୍ରାର୍ଥୀ ମାଡ଼ି ଆସିଲେ । ମାନବିକତା ଦୃଷ୍ଟିରୁ ସେମାନଙ୍କୁ ଥଇଥାନ କରିବା ପାଇଁ ସରକାରୀ କଳର ସାମର୍ଥ୍ୟ ଯଥେଷ୍ଟ ନ ଥିଲା । ସେଥିପାଇଁ ବୃହତ୍ତମ ଏବଂ ଐତିହାସିକ ରାଜନୈତିକ ଦଳ ହିସାବରେ ଜାତୀୟ କଂଗ୍ରେସର ଦାୟିତ୍ୱ ଅଧିକ ଥିଲା । ସାମ୍ପ୍ରଦାୟିକ ତିକ୍ତତା ଦୂର କରିବାକୁ ଚେଷ୍ଟାରତ ମହାତ୍ମା ଗାନ୍ଧୀ ସ୍ୱାଧୀନତା ପ୍ରାପ୍ତିର ମାତ୍ର ୬ ମାସ ଭିତରେ ଆତତାୟୀର ଗୁଳିରେ ନିହତ ହେଲେ । ସେଥିପାଇଁ ସମାଜ-ସମ୍ପ୍ରଦାୟ ଭିତରେ ଅଶାନ୍ତି ଓ ତିକ୍ତତା ବଢ଼ିଯିବା ସ୍ୱାଭାବିକ । ସର୍ବୋପରି ଜାତୀୟ କଂଗ୍ରେସର ତୁଙ୍ଗ ନେତାମାନେ ଶାସନ ଦାୟିତ୍ୱରେ ଥିବାରୁ ଦଳୀୟ ସଂଗଠନର ଦାୟିତ୍ୱ କିଏ ନେବ ଏବଂ ସଂସଦୀୟ ଶାଖା ସହିତ ଦଳୀୟ ଶାଖାର କି ସମ୍ପର୍କ ରହିବ, ଏହା ନେଇ ବହୁ ବାଦ-ବିସମ୍ବାଦ ପ୍ରକାଶ ପାଇଲା । ଦ୍ୱିତୀୟ ବିଶ୍ୱଯୁଦ୍ଧ କାଳରେ ୧୯୩୯ ମସିହାରୁ ବହୁ ବର୍ଷ ଧରି ମୌଲାନା ଆବୁଲ୍ କାଲାମ୍ ଆଜାଦ କଂଗ୍ରେସ ସଭାପତି ଥିଲେ । ମାତ୍ର ୧୯୪୬ ମସିହାରେ କଂଗ୍ରେସ ସଭାପତି ରୂପେ ଜବାହରଲାଲ ନେହେରୁ ନିର୍ବାଚିତ ହୋଇ ସେହି ବର୍ଷ ବଡ଼ଲାଟଙ୍କ ପରାମର୍ଶଦାତା କାଉନ୍‌ସିଲର ଉପସଭାପତି ଏବଂ ୧୯୪୭ ମସିହାରେ ପ୍ରଧାନମନ୍ତ୍ରୀ ହେଲେ ।

ଶାସନ ଦାୟିତ୍ୱ ସହିତ ସଂଗଠନର ଦାୟିତ୍ୱ ତୁଲାଇବାକୁ ଅସମର୍ଥ ହୋଇ ଏବଂ ଦଳୀୟ ସଂଗଠନ, ସଂସଦୀୟ ସଂଗଠନର ଅନୁବର୍ତ୍ତୀ ହେବ ବୋଲି ସିଦ୍ଧାନ୍ତ କରି ନେହେରୁ ତତ୍କାଳୀନ କଂଗ୍ରେସର ନେତା ଅଧ୍ୟାପକ କୃପାଲନୀଙ୍କୁ କଂଗ୍ରେସ ସଭାପତି କରାଇ ଦଳୀୟ ଦାୟିତ୍ୱରୁ ଅବ୍ୟାହତି ନେଲେ । ସ୍ପଷ୍ଟବାଦୀ ଏବଂ ଏକାନ୍ତ ଭାବରେ ଗାନ୍ଧିବାଦୀ ଅଧ୍ୟାପକ କଂଗ୍ରେସ-କର୍ମୀମାନଙ୍କର କ୍ଷମତା ଲୋଭ ଏବଂ ଶଠତାରେ ବିବ୍ରତ ହୋଇପଡ଼ିଥିଲେ ମଧ୍ୟ ସମସ୍ୟାର ସମାଧାନ ପାଇଁ ଲାଗିପଡ଼ିଥିଲେ । କିନ୍ତୁ ତାଙ୍କର ଏ ସାଧୁ

ଉଦ୍ୟମକୁ ପ୍ରଧାନମନ୍ତ୍ରୀ ନେହେରୁ ଓ ଉପ ପ୍ରଧାନମନ୍ତ୍ରୀ ପଟେଲ ସେପରି ସମ୍ମାନ କରୁ ନ ଥିଲେ । ତେଣୁ ଦଳୀୟ ଆନୁଗତ୍ୟର ବନ୍ଧନ ଶିଥିଳ ହୋଇଗଲା । ଏହାର ପୁନରୁଦ୍ଧାର ପାଇଁ କୃତସଙ୍କଳ୍ପ ଅଧ୍ୟାପକ କ୍ରିପ୍‌ଲାନିଙ୍କୁ ନେହେରୁ ବରଦାସ୍ତ କଲେ ନାହିଁ । ଫଳରେ ସେ କଂଗ୍ରେସ ସଭାପତି ପଦରୁ ଅବ୍ୟାହତି ନେଇଗଲେ । ତାଙ୍କ ସ୍ଥାନରେ କଂଗ୍ରେସ ଦଳର ଏହି ସଙ୍କଟମୟ ଅବସ୍ଥାରେ କଂଗ୍ରେସ ସଭାପତି କିଏ ହେବ ସେଥିପାଇଁ ଭିତ୍ତିର ପରାମର୍ଶ ଚାଲିଲା । ପଣ୍ଡିତ ନେହେରୁ ଏବଂ ସର୍ଦ୍ଦାର ପଟେଲଙ୍କର ସମସ୍ତରସ୍ୱ ନେତା କଂଗ୍ରେସ ସଭାପତି ନ ହେଲେ ସରକାରୀ ଶାଖା ଏବଂ ଦଳୀୟ ଶାଖାର ସମନ୍ୱୟବିଧାନ କଷ୍ଟକର ହୋଇପଡ଼ିବ ବୋଲି ସମସ୍ତେ ସ୍ୱୀକାର କଲେ । ଆଚାର୍ଯ୍ୟ ନରେନ୍ଦ୍ରଦେବ କଂଗ୍ରେସ ସଭାପତି ହୁଅନ୍ତୁ ବୋଲି ଗାନ୍ଧିଜୀ ପ୍ରସ୍ତାବ କଲେ; କିନ୍ତୁ ନେହେରୁ ଓ ପଟେଲ ଉଭୟେ ଏ ପ୍ରସ୍ତାବରେ ରାଜିହେଲେ ନାହିଁ । ତେଣୁ ଅନ୍ତରଙ୍ଗ ବନ୍ଧୁ ସର୍ଦ୍ଦାର ପଟେଲଙ୍କ ଅନୁରୋଧକ୍ରମେ ଖାଦ୍ୟ ଓ କୃଷିମନ୍ତ୍ରୀ ପଦରୁ ଇସ୍ତଫା ଦେଇ ଡକ୍ଟର ରାଜେନ୍ଦ୍ର ପ୍ରସାଦ କଂଗ୍ରେସର ସଭାପତି ହୋଇ ଦଳର ଘୋର ଦୁର୍ଦ୍ଦିନବେଳେ ସଫଳ ନେତୃତ୍ୱ ଦେଇଥିଲେ ।

ଭାରତର ରାଜଧାନୀ ଦିଲ୍ଲୀରେ ସାମ୍ପ୍ରଦାୟିକତା ଓ ଅରାଜକତା ବ୍ୟାପିଗଲା । ଏହି ଗଣ୍ଡଗୋଳ ଦବାଇବାକୁ ଯାଇ ଦକ୍ଷ ଆଇ. ସି. ଏସ୍. ଅଫିସର କୃପାସିନ୍ଧୁ ମିଶ୍ର ଘଟଣାସ୍ଥଳରେ ନିହତ ହେଲେ । ୧୯୪୮ ମସିହା ଜୁନ ୩୦ରେ ମାଉଣ୍ଟବ୍ୟାଟେନ୍ ବଡ଼ଲାଟ ପଦ ଛାଡ଼ିଯିବା ଆଗରୁ ସ୍ୱାଧୀନତା ପ୍ରାପ୍ତିର ୫ ମାସ ୧୫ ଦିନ ସନ୍ଧ୍ୟାରେ ଭାରତୀୟ ମୁକ୍ତି ଆନ୍ଦୋଳନର ସର୍ବୋଚ୍ଚ ସେନାପତି ମହାତ୍ମାଗାନ୍ଧୀ ଶହୀଦ୍ ହେଲେ । ବଙ୍ଗ ପ୍ରଦେଶର ନୂଆଖାଲିରେ ସାମ୍ପ୍ରଦାୟିକ ସଦ୍‌ଭାବ ଦୂର କରିବାରେ ବ୍ୟସ୍ତରହି, ସେଠାରେ ୧୯୪୭ ଅଗଷ୍ଟ ୧୫ ତାରିଖର ସ୍ୱାଧୀନତା ଦିବସ ପାଳନ କରି ରାଜଧାନୀ ଦିଲ୍ଲୀକୁ ଫେରି ଆସିଥିବା ମହାତ୍ମା ଗାନ୍ଧୀ ଆଉ ଜାତିକୁ ନେତୃତ୍ୱ ଦେବାପାଇଁ ବଞ୍ଚି ରହିଲେ ନାହିଁ । ସେ ନିଜର ଅନୁଗାମୀମାନଙ୍କର କ୍ଷମତା ଲୋଭରେ ବ୍ୟଥିତ ଓ ଦୁଃଖିତ ହୋଇ କାଳାତିପାତ କରୁଥିଲେ । ତେଣୁ

ମୃତ୍ୟୁର ପୂର୍ବରୁ ସେ ଅନଶନ କରିଥିଲେ । ଅନଶନ ସମୟରେ ରାଜଧାନୀ ଦିଲ୍ଲୀରେ ଶାନ୍ତି ପ୍ରତିଷ୍ଠା ପାଇଁ ରାଜେନ୍ଦ୍ରପ୍ରସାଦଙ୍କ ନେତୃତ୍ୱରେ ଶାନ୍ତି କମିଟି ଗଠିତ ହୋଇଥିଲା । କ୍ଷମତାଲୋଭରୁ କର୍ମୀମାନଙ୍କୁ ନିବୃତ୍ତ କରିବା ପାଇଁ ସେବାଗ୍ରାମଠାରେ ରଚନାତ୍ମକ କର୍ମୀ ସମ୍ମିଳନୀର ବ୍ୟବସ୍ଥା ହେଲା । ୧୯୪୮ ଜାନୁୟାରୀ ୩୦ ରେ ରାଜେନ୍ଦ୍ର ପ୍ରସାଦ ଏହି ଉପଲକ୍ଷେ ଓ୍ୱାର୍ଦ୍ଧା ଯିବା ଆଗରୁ ଗାନ୍ଧିଜୀଙ୍କ ସହିତ ପରାମର୍ଶ କରିଥିଲେ । ସେଦିନ ଅପରାହ୍ଣ ସାଢ଼େ ଦୁଇଟା ବେଳେ ରାଜେନ୍ଦ୍ର ପ୍ରସାଦ ସେବାଗ୍ରାମରେ ପହଞ୍ଚିଲେ । ଉକ୍ତ ଦିନ ସନ୍ଧ୍ୟାରେ ଗାନ୍ଧି ହତ୍ୟା ଖବର ରେଡ଼ିଓରୁ ଶୁଣି ରାଜେନ୍ଦ୍ର ପ୍ରସାଦ ଗାନ୍ଧିଜୀଙ୍କ ତୃତୀୟ ପୁତ୍ର ରାମଦାସଙ୍କ ସହିତ ଦିଲ୍ଲୀ ଫେରିଗଲେ ।

ଗାନ୍ଧିଜୀଙ୍କର ଜୀବନାବସାନରେ ତାଙ୍କର ବିଶିଷ୍ଟ ଅନୁରକ୍ତ ଗାନ୍ଧିବାଦୀ ନେତା ରାଜେନ୍ଦ୍ର ପ୍ରସାଦ ଗଭୀର ମର୍ମାହତ ହୋଇଥିଲେ ମଧ୍ୟ ବିଚଳିତ ହୋଇ ନ ଥିଲେ । ଗାନ୍ଧିଜୀଙ୍କ 'ସ୍ୱପ୍ନର ଭାରତ' ପ୍ରତିଷ୍ଠା ନ କଲେ ସ୍ୱର୍ଗତ ନେତାଙ୍କ ସ୍ମୃତି ପ୍ରତି ଅପମାନ ହେବ ବୋଲି ସେ ଭାବୁଥିଲେ । ଗାନ୍ଧିଜୀଙ୍କ ସାଧନା ଓ ନିଷ୍ଠାବାନ୍ ଆଚରଣରେ ପ୍ରତିଷ୍ଠିତ ଆଦର୍ଶକୁ ବଳିଷ୍ଠ କରିବା ପାଇଁ ରାଜେନ୍ଦ୍ର ପ୍ରସାଦ ଶପଥ ନେଇଥିଲେ । ବିହାରର ଚମ୍ପାରଣ୍‌ରେ ଆଫ୍ରିକା ଫେରନ୍ତା ନେତା ଗାନ୍ଧିଜୀଙ୍କ ସହିତ ପ୍ରଥମ ସାକ୍ଷାତ୍‌ଠାରୁ ଜୀବିକାକୁ ଜଳାଞ୍ଜଳି ଦେଇ ଜନଜୀବନକୁ ରାଜେନ୍ଦ୍ର ପ୍ରସାଦ ଲକ୍ଷ୍ୟ ପ୍ରଦାନ କରିଥିଲେ । ସେଇ ଦୀର୍ଘ କାଳର ଅତୀତ ମନେପଡ଼ିଗଲେ ମଧ୍ୟ ସନାତନ ହିନ୍ଦୁମତାବଲମ୍ବୀ ରାଜେନ୍ଦ୍ର ପ୍ରସାଦ ମରଣକୁ ଜୀବନର ପୂର୍ଣ୍ଣତମ ବିକାଶ ବୋଲି ମନେକରୁଥିଲେ । ଗାନ୍ଧିଜୀ ପ୍ରାଣ ଛାଡ଼ିବା ପୂର୍ବରୁ 'ହେ-ରାମ' ବୋଲି ଉଚ୍ଚାରଣ କରିଥିଲେ । ମୃତ୍ୟୁ କେବଳ ଘଟ ପରିବର୍ତ୍ତନ ମାତ୍ର ତେଣୁ ଅପରାଜିତ ମରଣ ପାଇଁ ସର୍ବଦା ପ୍ରସ୍ତୁତ ହୋଇ ରହିବା, ହିନ୍ଦୁ ଆଧ୍ୟାତ୍ମିକତାର ଚରମ ନିର୍ଦ୍ଦେଶ । ତେଣୁ ପୂଜ୍ୟ ନେତାଙ୍କ ଆଦର୍ଶ ଅନୁସରଣ ପାଇଁ ରାଜେନ୍ଦ୍ର ପ୍ରସାଦ ଲାଗିପଡ଼ିଲେ ।

ରାଜେନ୍ଦ୍ର ପ୍ରସାଦ କଂଗ୍ରେସ ସଭାପତିର ଦାୟିତ୍ୱ ତୁଲାଇବା ସଙ୍ଗେ ସଙ୍ଗେ ନିପରି ଦ୍ରୁତଗତିରେ ସମ୍ବିଧାନ ରଚିତ ହୋଇ ଭାରତକୁ ଔପନିବେଶିକ ଶାସନ ପରିବର୍ତ୍ତେ ଏକ ସ୍ୱାଧୀନ ଗଣତାନ୍ତ୍ରିକ ସାଧାରଣ

ତନ୍ତ୍ରରେ ପରିଣତ କରାଯିବ ସେଥିପାଇଁ ସମ୍ବିଧାନ ସଭାର ଅଧ୍ୟକ୍ଷ ହିସାବରେ ଲାଗି ପଡ଼ିଥିଲେ । ସମସ୍ୟାର ସରଳ ସମାଧାନ, ସ୍ୱାଭାବିକ ମାନର ବିକାଶ ପାଇଁ ତାଙ୍କୁ ବୁଦ୍ଧଦେବଙ୍କର ଯୋଗ୍ୟ ଦାୟାଦ ବୋଲି ନେତ୍ରୀ ସରୋଜିନୀ ନାଇଡ଼ୁ କହୁଥିଲେ । ଗଣତନ୍ତ୍ରର ଉଦ୍ଦେଶ୍ୟ ସମ୍ବିଧାନ ସଭାରେ ସ୍ୱାଧୀନତା ପ୍ରାପ୍ତି ପୂର୍ବରୁ ଗୃହୀତ ହୋଇଯାଇଥିଲା । ୩୯୫ ଦଫାବିଶିଷ୍ଟ ବିଶ୍ୱର ବୃହତ୍ତମ ସମ୍ବିଧାନ ରୂପେ ଭାରତର ଗଣତାନ୍ତ୍ରିକ ସମ୍ବିଧାନ ୧୯୪୯ ମସିହା ନଭେମ୍ବର ୨୬ ତାରିଖ ଦିନ ରାଜେନ୍ଦ୍ର ପ୍ରସାଦଙ୍କ ଅଧ୍ୟକ୍ଷତାରେ ଗୃହୀତ ହୋଇଗଲା । ଉକ୍ତ ସମ୍ବିଧାନ ପ୍ରଣୟନ ପାଇଁ ୧୯୩୫ ମସିହାର ଭାରତ ଆଇନ ୧୯୩୦ ମସିହାର ନେହେରୁ କମିଟି ଦ୍ୱାରା ପ୍ରସ୍ତୁତ ସମ୍ବିଧାନ ଛଡ଼ା ବିଲାତର ଅଲିଖିତ ସମ୍ବିଧାନ, ଆମେରିକା, ଅଷ୍ଟ୍ରେଲିଆ, କାନାଡ଼ା ଓ ଆୟାରଲାଣ୍ଡ ସମ୍ବିଧାନର ସାହାଯ୍ୟ ନିଆଯାଇଛି ।

ଭାରତକୁ ବିଭିନ୍ନ ଭାଷାଭାଷୀ ଅନୁକ୍ରମେ ନିର୍ଦ୍ଦିଷ୍ଟ କ୍ଷମତାପନ୍ନ ରାଜ୍ୟମାନଙ୍କରେ ବିଭକ୍ତ କରାଗଲେ ମଧ୍ୟ ବୈଦେଶିକ ବ୍ୟାପାର, ପ୍ରତିରକ୍ଷା, ଗମନାଗମନ ଆଦି କେତେକ କ୍ଷମତା ସହିତ ସର୍ବୋଚ୍ଚ କ୍ଷମତା କେନ୍ଦ୍ର ଶାସନକୁ ଉକ୍ତ ସମ୍ବିଧାନରେ ଦିଆଯାଇଛି । ତେଣୁ ଭାରତ ଏକ ରାଷ୍ଟ୍ରସଙ୍ଘ ହେଲେ ମଧ୍ୟ କ୍ଷମତାର ଠୂଳୀକରଣ ପ୍ରବୃତ୍ତିରୁ ମୁକ୍ତ ନୁହେଁ । ଭାରତୀୟ ଜାତୀୟତାକୁ ତତ୍କାଳୀନ ସାମାଜିକ ଏବଂ ରାଜନୈତିକ ପରିସ୍ଥିତିରେ ଦୃଢ଼ ରଖି ନବଲବ୍ଧ ସ୍ୱାଧୀନତାକୁ ଅକ୍ଷୁଣ୍ଣ ରଖିବା ପାଇଁ ରାଜେନ୍ଦ୍ର ପ୍ରସାଦଙ୍କ ନେତୃତ୍ୱରେ ସମ୍ବିଧାନ ସଭା ଏହି ସମ୍ବିଧାନକୁ ଗ୍ରହଣ କରି ସାବାଳକ ଭୋଟ ପ୍ରଥାରେ ଭାରତକୁ ପୃଥିବୀର ବୃହତ୍ତମ ଗଣତାନ୍ତ୍ରିକ ଦେଶରେ ପରିଣତ କରି ଦେଲେ । ଏହି ସମ୍ବିଧାନ କରାଚୀ କଂଗ୍ରେସର ସ୍ମାରକ ଦିବସ ୧୯୫୦ ମସିହା ଜାନୁୟାରୀ ୨୬ ତାରିଖରେ କାର୍ଯ୍ୟକାରୀ ହେବ ବୋଲି ରାଜେନ୍ଦ୍ର ପ୍ରସାଦ ଘୋଷଣା କରିଥିଲେ ।

୧୯୪୮ ମସିହା ଜୁନ୍ ୩୦ ତାରିଖରେ ପରାଧୀନ ଭାରତର ଶେଷ ବଡ଼ଲାଟ ଏବଂ ସ୍ୱାଧୀନ ଭାରତର ପ୍ରଥମ ବଡ଼ଲାଟ ଲର୍ଡ ମାଉଣ୍ଟ୍ ବ୍ୟାଟେନ୍ ନୀଳ ନାବିକ-ପୋଷାକ ପିନ୍ଧି ତାଙ୍କ ପଦବୀରୁ ଅବସର ନେଲେ । ଦୀର୍ଘ ଶହେ

ଏକାନବେ ବର୍ଷର ବ୍ରିଟିଶ ଶାସନର ଐତିହାସିକ ପରିସମାପ୍ତି ପରେ ସ୍ୱାଧୀନ ଭାରତର ଶେଷ ବଡ଼ଲାଟ ହେଲେ ବିଶିଷ୍ଟ କୂଟନୀତିଜ୍ଞ ଚକ୍ରବର୍ତ୍ତୀ ରାଜଗୋପାଳ ଚାରୀ । ରାଜାଜୀ ୧୯୫୦ ମସିହା ଜାନୁୟାରୀ ୨୬ ତାରିଖ ଯାଏ ପୁରାତନ ଆଇନ ବିଧାନରେ କାର୍ଯ୍ୟ କରି ନୂତନ ସମ୍ବିଧାନ ଏ ଦେଶରେ କାର୍ଯ୍ୟକାରୀ ହେବା ପାଇଁ ସବୁ ବ୍ୟବସ୍ଥା ଗ୍ରହଣ କରିଥିଲେ । ସେ ଭାରତର ଗଣତାନ୍ତ୍ରିକ ସମ୍ବିଧାନ ଅନୁସାରେ ପ୍ରଥମ ରାଷ୍ଟ୍ରପତି ହେବାକୁ ଚାହିଁଥିଲେ । ପ୍ରଧାନମନ୍ତ୍ରୀ ଜବାହରଲାଲ ନେହେରୁ ମଧ୍ୟ ତାଙ୍କୁ ଏଥିପାଇଁ ଦୃଢ଼ ସମର୍ଥନ ଜଣାଉଥିଲେ; କିନ୍ତୁ ଅଧିକାଂଶ କଂଗ୍ରେସ ପ୍ରତିନିଧି ଏବଂ ଉପପ୍ରଧାନମନ୍ତ୍ରୀ ସର୍ଦ୍ଦାର ବଲ୍ଲଭଭାଇ ପଟେଲ ଏହି ଐତିହାସିକ ଗୌରବ ରାଜେନ୍ଦ୍ର ପ୍ରସାଦଙ୍କୁ ଦେବା ପାଇଁ ଉଦ୍ୟମ କଲେ । ଆଜୀବନ ଗାନ୍ଧିବାଦୀ, ସରଳ ନିଷ୍ଠାପର ଦେଶସେବୀ, ବିଚକ୍ଷଣ ବୁଦ୍ଧିଜୀବୀ ଡକ୍ଟର ରାଜେନ୍ଦ୍ର ପ୍ରସାଦ ନୂତନ ସମ୍ବିଧାନ ଅନୁସାରେ ଭାରତର ପ୍ରଥମ ରାଷ୍ଟ୍ରପତି ହିସାବରେ ୧୯୫୦ ମସିହା ଜାନୁୟାରୀ ୨୬ ତାରିଖ ଦିନ ଦାୟିତ୍ୱ ନେଲେ ।

ରାଜେନ୍ଦ୍ର ପ୍ରସାଦ ସକ୍ରିୟ ରାଜନୀତି ଏବଂ ଜଞ୍ଜାଳମୟ ଜନଜୀବନରୁ ଅପସରି ଯାଇ ରାଷ୍ଟ୍ରର ସାର୍ବଜନୀନ ମୁଖ୍ୟ ରୂପେ ଏବଂ ଭାରତୀୟ ସମ୍ବିଧାନର ସର୍ବୋଚ୍ଚ ମୁରବି ହିସାବରେ ଦଳୀୟ ରାଜନୀତିରୁ ଅବ୍ୟାହତି ନେଲେ । ସେଥିପାଇଁ ସେ ତାଙ୍କର ପ୍ରିୟ ଜାତୀୟ କଂଗ୍ରେସରୁ ଇସ୍ତଫା ଦେଇ ଦେଇଥିଲେ । ଶାସନ ପରିଚାଳନା ସହିତ ୧୯୫୨ ମସିହାରେ ସାବାଳକ ଭୋଟ ପ୍ରଥାରେ ପ୍ରଥମ ସାମ୍ବିଧାନିକ ପାର୍ଲାମେଣ୍ଟ ଗଢ଼ାଯିବା ପାଇଁ ସେତେବେଳେ କାର୍ଯ୍ୟାନୁଷ୍ଠାନ ହେଉଥିଲା । ରାଜନୈତିକ ସ୍ୱାଧୀନତା ପରେ ଭାରତକୁ ଅର୍ଥନୈତିକ ସ୍ୱାଧୀନତା ଦେବାପାଇଁ ଯୋଜନାବଦ୍ଧ ଅର୍ଥନୀତିର ପ୍ରବର୍ତ୍ତନ ପାଇଁ ପ୍ରଥମ ପଞ୍ଚବାର୍ଷିକ ଯୋଜନା ୧୯୫୧ ମସିହାରେ ପ୍ରବର୍ତ୍ତିତ ହେଲା ।

ମଧ୍ୟବର୍ତ୍ତୀକାଳୀନ ରାଷ୍ଟ୍ରପତି ହିସାବରେ ରାଜେନ୍ଦ୍ର ପ୍ରସାଦ ଥିବାବେଳେ ଯୁଗଯୁଗର ସାମାଜିକ ପରମ୍ପରା, ରାଷ୍ଟ୍ର-ତନ୍ତ୍ର, ବିଦେଶୀ ଶାସନ ପରିବର୍ତ୍ତେ ସାବାଳକ ଭୋଟ ପ୍ରଥାରେ ବିଶ୍ୱର ବୃହତ୍ତମ ଗଣତାନ୍ତ୍ରିକ ଦେଶ ଭାରତରେ ପ୍ରଥମ ସାଧାରଣ ନିର୍ବାଚନ ୧୯୫୨ ମସିହାରେ ଅନୁଷ୍ଠିତ ହେଲା ।

ନବଗଠିତ ପାର୍ଲାମେଣ୍ଟର ନେତା ହିସାବରେ ପଣ୍ଡିତ ଜବାହାରଲାଲ ନେହେରୁ ପ୍ରଧାନମନ୍ତ୍ରୀ ନିର୍ବାଚିତ ହେଲେ । ଏହାପରେ ରାଷ୍ଟ୍ରପତି ନିର୍ବାଚନରେ ରାଜେନ୍ଦ୍ର ପ୍ରସାଦ ରାଷ୍ଟ୍ରପତି ନିର୍ବାଚନ କଲେଜର ୬୩୪୮୬ ଭୋଟରୁ ୨୮୧୭୬ଟି ଭୋଟ ପାଇ ରାଷ୍ଟ୍ରପତି ନିର୍ବାଚିତ ହେଲେ । ସେ ସମ୍ବିଧାନ ଅନୁସାରେ ନିର୍ବାଚିତ ହୋଇ ୧୯୫୨ ମସିହା ମେ ୧୩ ତାରିଖ ଦିନ ରାଷ୍ଟ୍ରପତି ରୂପେ ଶପଥ ପାଠ କରିଥିଲେ । ଲହୁଲୁହ ଭିତର ଦେଇ ବହୁ ଅତ୍ୟାଚାର ନିର୍ଯ୍ୟାତନା ସହି ଜୀବନକୁ ପାଣି ଛଡ଼ାଇ ଖ୍ରୀ. ୧୮୧୭ରେ ଓଡ଼ିଶାର ବୀର ପାଇକମାନେ ଖୋର୍ଦ୍ଧାରେ ଯେଉଁ ଭାରତୀୟ ମୁକ୍ତି ସଂଗ୍ରାମର ଶୁଭ ଦେଇଥିଲେ; ତିଲକ ମହାରାଜଙ୍କ ଖ୍ରୀ. ୧୮୫୭ର ପ୍ରଜ୍ୱଳିତ ହୋଇଥିବା ସେହି ବିପ୍ଳବ, ତାଙ୍କର 'ସ୍ୱରାଜ ମୋହର ଜନ୍ମଗତ ଦାବୀ' ମନ୍ତ୍ର ପାଠରେ ଆହୁରି ପ୍ରଜ୍ୱଳିତ ହୋଇଥିଲା । ଦରଖାସ୍ତ ପ୍ରାର୍ଥନା, ସୁପାରିଶରେ ପରିଚାଳିତ ଜାତୀୟ ମୁକ୍ତି ସଂଗ୍ରାମର ପୀଠ କଂଗ୍ରେସକୁ ବଳିଷ୍ଠ ସଂଗ୍ରାମୀ ଅନୁଷ୍ଠାନରେ ପରିଣତ କରି, ବିଳାତ ଫେରନ୍ତା ବାରିଷ୍ଟର ଏବଂ ଦକ୍ଷିଣ ଆଫ୍ରିକା ପ୍ରବାସରେ ଭାରତୀୟ ସ୍ୱାଭିମାନ ଅହିଂସ ପ୍ରତିରୋଧରେ ସଫଳ ଭାବରେ ସାବ୍ୟସ୍ତ କରି ଆଣ୍ଠୁ ଲୁଗୁ-ଲୁଗା ପିନ୍ଧୁଥିବା 'ଅର୍ଦ୍ଧନଗ୍ନ ଫକୀର' ଜାତିର ଜନକ ମହାତ୍ମା ଗାନ୍ଧିଙ୍କ ନେତୃତ୍ୱରେ ମୁଷ୍ଟିମେୟ ସୁଧୀଜନ ମହଲରୁ ସାବାଳକ ଗଣାନ୍ଦୋଳନ ହୋଇ ବହୁର ଅଭ୍ୟୁଦୟ ପନ୍ଥାରେ ନାନା ପରୀକ୍ଷା ମଧ୍ୟରେ, ରକ୍ତସ୍ନାତ ହୋଇ, ଶେଷକୁ ଭାରତବର୍ଷ ବିଶ୍ୱର ବୃହତ୍ତମ ଗଣତାନ୍ତ୍ରିକ ସାଧାରଣତନ୍ତ୍ରରେ ପରିଣତ ହେଲା ।

ଏହି ଲକ୍ଷ୍ୟ ହାସଲ ପାଇଁ କେତେ ତ୍ୟାଗ, କେତେ ଲାଞ୍ଛନା, କେତେ ଉପହାସ ସହିତ ବିଭିନ୍ନ ଚକ୍ରାନ୍ତ ସୁବିଧାବାଦୀ ସ୍ୱାର୍ଥର ଅକୁହା କାହାଣୀ ଇତିହାସର ଅଲିଆଗଦା ଭିତରେ ଲୁଚିଗଲା । ପୂର୍ବ ପୁରୁଷଙ୍କ ତ୍ୟାଗ ଫଳରେ ପ୍ରତିଷ୍ଠିତ ଏହି ଭାରତୀୟ ସାଧାରଣତନ୍ତ୍ରର ରାଷ୍ଟ୍ରପତି ଗାଦିରେ ବୌଦ୍ଧଧର୍ମରେ ଆକ୍ରାନ୍ତ ବିହାର ଭୂମିର କାୟସ୍ଥ ମଧ୍ୟବିତ୍ତ ପରିବାରରୁ ଆସି ଦୁଃଖ ନିର୍ଯ୍ୟାତନା ଭିତରେ କଲିକତା ମହାନଗରୀରେ ଉଚ୍ଚଶିକ୍ଷିତ ହୋଇଥିବା ରାଜେନ୍ଦ୍ର ପ୍ରସାଦ ଭାରତର ପ୍ରଥମ ରାଷ୍ଟ୍ରପତି ନିର୍ବାଚିତ ହେଲେ । ଛାତ୍ରଜୀବନରେ ସବୁ ପରୀକ୍ଷାରେ ପ୍ରଥମ ସ୍ଥାନ ଅଧିକାର କରି

ଆସିଥିବା ଏହି ଦେଶପ୍ରାଣ ଜନସେବୀ ବିଂଶ ଶତାବ୍ଦୀର ଆଦ୍ୟରୁ ଜାତୀୟ କଂଗ୍ରେସ ସହିତ ସଂପୃକ୍ତ ରହି ଅଖଣ୍ଡ ଲୋକପ୍ରିୟତା ହାସଲ କରିଥିବା ରାଜେନ୍ଦ୍ର ପ୍ରସାଦ ଗଣତାନ୍ତ୍ରିକ ଭାରତର ପ୍ରଥମ ରାଷ୍ଟ୍ରପତି ଦାୟିତ୍ୱ ନେଇଥିବାରୁ ଦେଶର ସବୁ ସ୍ତରରେ ସନ୍ତୋଷ ପ୍ରକାଶ ପାଇଲା ।

ଏକ ବିଷୟରେ ନିଷ୍ପତ୍ତି କଲା ପୂର୍ବରୁ ବିଭିନ୍ନ ଦିଗରୁ ବହୁଥର ବିଚାର ଚିନ୍ତା କରିବାକୁ ରାଜେନ୍ଦ୍ର ପ୍ରସାଦ ଚାହୁଁଥିଲେ । ନିଜର ମତକୁ ଚାପି ଦେବାର ସେ ଘୋର ବିରୋଧୀ ଥିଲେ । ବିଭିନ୍ନ ବିଷୟରେ ସେ ତାଙ୍କର ମତାମତ ପ୍ରଧାନମନ୍ତ୍ରୀଙ୍କୁ ଲେଖି ପଠାନ୍ତି । ପ୍ରସ୍ତାବ ଦ୍ୱାରା କାମ କରାଇବା ହିଁ ତାଙ୍କର ନୀତି ଏବଂ ଏହା ହିଁ ଭାରତୀୟ ସଂସଦୀୟ ଗଣତନ୍ତ୍ରରେ ବୋଧହୁଏ ରାଷ୍ଟ୍ରପତିଙ୍କ ବାସ୍ତବ ଭୂମିକା । ସମ୍ବିଧାନ ଦୃଷ୍ଟିରୁ ଭାରତର ରାଷ୍ଟ୍ରପତି ଅତି କ୍ଷମତାଶାଳୀ; ସେ ଯାହା ଚାହିଁବେ ତାହା କରିପାରିବେ । କିନ୍ତୁ ଇଂଲଣ୍ଡର ରାଜାଙ୍କ ସହିତ ଭାରତର ରାଷ୍ଟ୍ରପତିଙ୍କୁ ସମ ସ୍ତରରେ ରଖାଯାଇଛି । ଇଂଲଣ୍ଡର ରାଜାଙ୍କ ନାମରେ ଶାସନ ଚାଲେ; କିନ୍ତୁ ସେ ଶାସକ କରନ୍ତି ନାହିଁ, ସମ୍ବିଧାନ ସଭାର ଅଧ୍ୟକ୍ଷ ପରବର୍ତ୍ତୀ କାଳରେ ରାଷ୍ଟ୍ରପତି ହୋଇ ସମ୍ବିଧାନ ପ୍ରଣେତାମାନଙ୍କର ମନୋଭାବକୁ ସ୍ୱଭାବତଃ ସମ୍ମାନ କରୁଥିଲେ । ଏହାଛଡ଼ା ଦୀର୍ଘକାଳଧରି ମୁକ୍ତି ସଂଗ୍ରାମର ପ୍ରଧାନମନ୍ତ୍ରୀ ଜବାହରଲାଲ ତାଙ୍କର ସହକର୍ମୀ ଥିଲେ । ତେଣୁ ଉଭୟଙ୍କର ବ୍ୟକ୍ତିଗତ ସମ୍ପର୍କ ଅତି ଅନ୍ତରଙ୍ଗ ଥିଲା । ଉଭୟେ ଉଭୟଙ୍କ ମତାମତ ଏବଂ ସ୍ୱାଭିମାନ ବିଷୟରେ ସଚେତନ ଥିଲେ । ଦୃଷ୍ଟିକୋଣରେ ଅନେକ ସମୟରେ ଭିନ୍ନତା ପ୍ରକାଶ ପାଇଲେ ମଧ୍ୟ ସେଥିରେ ମତଭେଦ, ମନଭେଦ ନ ଥିଲା ।

ରାଜେନ୍ଦ୍ର ପ୍ରସାଦ ପ୍ରାଚୀନ ପରମ୍ପରାର ନବୀକରଣ ଚାହୁଁଥିଲେ । ସେ ମଧ୍ୟମ ପନ୍ଥୀ ରାଜନୀତିଜ୍ଞ, ଜବାହରଲାଲ ପଶ୍ଚିମାନୁକରଣପ୍ରିୟ ଏବଂ ବାମପନ୍ଥୀ । ତେବେ ଉଭୟ ନେତା ଭାରତର ସମୂହ ସ୍ୱାର୍ଥ ପାଇଁ ବ୍ୟସ୍ତ । ତେଣୁ ଉଭୟଙ୍କର ଉଭୟଙ୍କ ପ୍ରତି ସ୍ନେହ ଓ ଶ୍ରଦ୍ଧା ଅତୁଟ ରହିଥିଲା । ଖ୍ରୀ. ୧୯୫୬ରେ ଭାଷାଭିତ୍ତିରେ ରାଜ୍ୟ ପୁନର୍ଗଠନ ହେଲା ; ଏହି ସୀମା କମିଶନରେ ଓଡ଼ିଶାର ପୂର୍ବତନ ରାଜ୍ୟପାଳ ସୟଦ୍ ଫଜଲ୍ ଅଲ୍ଲୀ, ପଣ୍ଡିତ

ହୃଦୟନାଥ କୁଞ୍ଜରୁ, ସର୍ଦ୍ଦାର କେ. ଏମ୍. ପାନକର ସଦସ୍ୟ ଥିଲେ । ରାଜନୈତିକ ଭାରତର ମାନଚିତ୍ରକୁ ଆଧାରରେ ଏହି କମିଶନ ଦ୍ୱାରା ଭଙ୍ଗା ଯାଇଥିଲା । ଯୁକ୍ତ ପ୍ରଦେଶର ନାମ ବଦଳି ଉତ୍ତର ପ୍ରଦେଶ ପଛେ ହେଲା, କିନ୍ତୁ ଏହି ବିରାଟ ରାଜ୍ୟକୁ ଭାଙ୍ଗି ତିନୋଟି ପ୍ରଦେଶ କରିବା ପାଇଁ କମିଶନଙ୍କ ମୂଳ ପ୍ରସ୍ତାବକୁ ସରକାର ଗ୍ରହଣ କଲେ ନାହିଁ । ୧୯୬୦ ମସିହାରେ ଭାଷାଭିତ୍ତିରେ ପ୍ରଦେଶ ଗଠନର ପ୍ରବକ୍ତା ଓଡ଼ିଶାରେ ଓଡ଼ିଆ ଭାଷାଭାଷୀ ଅଞ୍ଚଳ ସବୁ ମିଶାଇପାରିଲେ ନାହିଁ । ଏଥିପାଇଁ ପ୍ରଧାନମନ୍ତ୍ରୀ ନେହେରୁ ଏବଂ ରାଷ୍ଟ୍ରପତି ରାଜେନ୍ଦ୍ର ପ୍ରସାଦଙ୍କ ପ୍ରଭାବକୁ ଅନେକ ସ୍ତରରେ ସନ୍ଦେହ କରାଯାଏ । ନ୍ୟାଯ୍ୟ ଦାବୀ ପାଇଁ ହୋଇଥିବା ସୀମା ଆନ୍ଦୋଳନକୁ ନିର୍ମମ ଭାବରେ ଦମନ କରାଗଲା । କିନ୍ତୁ କାଳକ୍ରମେ ସୀମା କମିଶନ ସୁପାରିଶ କରି ନ ଥିବା ଆନ୍ଧ୍ର ପ୍ରଦେଶ ଗଠିତ ହୋଇଗଲା । ପରେ ପରେ ବମ୍ବେ ପ୍ରଦେଶ ମଧ୍ୟ ଦୁଇ ଭାଗ ହୋଇ ମହାରାଷ୍ଟ୍ର ଓ ଗୁଜୁରାଟରେ ପରିଣତ ହେଲା । ଏ ସବୁରେ ରାଜେନ୍ଦ୍ର ପ୍ରସାଦଙ୍କର କି ଭୂମିକା ଓ ଉଦ୍ଦେଶ୍ୟ ଥିବ କେଜାଣି; କିନ୍ତୁ ସେ ଏ ବିଷୟରେ କେବେ କିଛି ପ୍ରକାଶ୍ୟରେ କହି ନାହାନ୍ତି ।

ରାଜେନ୍ଦ୍ର ପ୍ରସାଦ ରାଷ୍ଟ୍ରପତି ଥିଲାବେଳେ ଆନ୍ତର୍ଜାତିକ ଖ୍ୟାତିସମ୍ପନ୍ନ ଦାର୍ଶନିକ ରାଧାକୃଷ୍ଣନ୍ ଉପରାଷ୍ଟ୍ରପତି ଥିଲେ । ପ୍ରଥମ ଲୋକସଭାର କାର୍ଯ୍ୟକାଳ ୧୯୫୭ ମସିହାରେ ସରିଗଲା । ୧୯୫୬ ମସିହାରେ ଦ୍ୱିତୀୟ ପଞ୍ଚବାର୍ଷିକ ଯୋଜନା ଶୁରୁ କରାଯାଇଥାଏ । ୧୯୫୭ ମସିହାରେ ଦ୍ୱିତୀୟ ଲୋକସଭା ନିର୍ବାଚନରେ ଜାତୀୟ କଂଗ୍ରେସ ପୁଣି ସଂଖ୍ୟାଗରିଷ୍ଠ ଦଳ ହୋଇ ଜବାହରଲାଲଙ୍କୁ ପ୍ରଧାନମନ୍ତ୍ରୀ ନିର୍ବାଚିତ କଲା । ଏହି ଅବସରରେ ପୁନଶ୍ଚ ଦ୍ୱିତୀୟ ଥର ପାଇଁ ରାଜେନ୍ଦ୍ର ପ୍ରସାଦ ରାଷ୍ଟ୍ରପତି ନିର୍ବାଚିତ ହେଲେ । ସରଳ ନିରାଡ଼ମ୍ବର ଭାବରେ ଚଳୁଥିବା ଏହି ରାଷ୍ଟ୍ରପତି ନିରାମିଷାଶୀ । ମାଂସ ଖାଇଲେ ଚିନ୍ତାଶକ୍ତି କମିଯାଏ ଏବଂ ମନରେ ହିଂସାଭାବ ଆସେ ବୋଲି ସେ ଭାବୁଥିଲେ । ହାତକଟା ସୂତାରେ ବୁଣା ଲୁଗା ସେ ପିନ୍ଧୁଥିଲେ । ରାଷ୍ଟ୍ରପତି ହିସାବରେ ତାଙ୍କର ମାସିକ ପାରିତୋଷିକ ଦଶହଜାର ଟଙ୍କା ଏବଂ ଅତିଥି ଚର୍ଚ୍ଚା । ଜନିତ ଭତ୍ତା ଅଢ଼େଇହଜାର ଟଙ୍କା । ଗାନ୍ଧିବାଦୀ ହିସାବରେ ରାଷ୍ଟ୍ରପତି

ରାଜେନ୍ଦ୍ର ପ୍ରସାଦ ଆପଣା ଭୁଇଁ ପାରିତୋଷିକ ଟଙ୍କା ବାବଦକୁ ମାତ୍ର ପାଞ୍ଚ ହଜାର ଟଙ୍କା ନେଉଥିଲେ । ସେ ଅତିଥିଚର୍ଚ୍ଚ । ଭତ୍ତା କେବେ ନେଇ ନାହାନ୍ତି । କ୍ଷମତାର ଅହଂ ତାଙ୍କୁ କେବେ ସ୍ପର୍ଶ କରି ନ ଥିଲା । ଦେଶର ତୁଙ୍ଗ କ୍ଷମତାଧର ହୋଇ ନମ୍ରଭାବରେ ଜନଗଣଙ୍କ ସହିତ ମିଶିପାରୁଥିଲେ । ସେ ନେପାଳ, ଜାପାନ, କାମ୍ବୋଡ଼ିଆ, ଭିଏତ୍‌ନାମ, ମାଳୟ, ଶ୍ରୀଲଙ୍କା ଆଦି ଦେଶକୁ ଗସ୍ତରେ ଯାଇଥିଲେ । ଆନ୍ତର୍ଜାତିକ ବୌଦ୍ଧ କେନ୍ଦ୍ରକୁ ବୋଧଗୟାର ବୁଦ୍ଧମନ୍ଦିରର ମାରଫତଦାର୍ କରି ସେ ବିଶ୍ୱମୟ ବୌଦ୍ଧ ମତାବଲମ୍ବୀ ମାନଙ୍କର ଶ୍ରଦ୍ଧାଭାଜନ ହୋଇଥିଲେ । ସେ ଜାପାନ ଗସ୍ତରେ ଯାଇ ସେଠା ଜନଗଣଙ୍କୁ ଖ୍ରୀଷ୍ଟପୂର୍ବ ୫ମ ଶତାବ୍ଦୀରେ ଭାରତର ବରପୁତ୍ର ପରମ କାରୁଣିକ ତଥାଗତଙ୍କର ଜାପାନ ପରିଦର୍ଶନ ବିଷୟରେ ସ୍ମରାଇଥିଲେ । ସୂର୍ଯ୍ୟଦେବଙ୍କ ପୁତ୍ର ଜାପାନ ଦ୍ୱିତୀୟ ବିଶ୍ୱଯୁଦ୍ଧର ଧ୍ୱଂସସ୍ତୂପ ଭିତରୁ ଗଭୀର ଆତ୍ମବିଶ୍ୱାସ ସହିତ ପୁନର୍ଗଠିତ ହେଉଥିବାରୁ ସେ ଗଭୀର ସନ୍ତୋଷଭାବ ପ୍ରକାଶ କରିଥିଲେ । ଅନ୍ୟତମ ବୌଦ୍ଧଦେଶ ଶ୍ରୀଲଙ୍କାକୁ ସେ ଗସ୍ତରେ ଯାଇ ଭାରତ ସହିତ ଶ୍ରୀଲଙ୍କାର ଆଧ୍ୟାତ୍ମିକ ସମ୍ପର୍କ ପ୍ରତିଷ୍ଠା କରିଥିଲେ ।

ରାଷ୍ଟ୍ରପତି ଭବନରୁ ସେ ବିଦେଶୀ ସମୟର ବହୁ ପରମ୍ପରା, ରୀତିନୀତି ଉଠାଇ ଦେଇଥିଲେ । ରାଷ୍ଟ୍ରପତି ଭବନର ୩୪୦ ବଖରା ତାଙ୍କ ବ୍ୟବହାର ପାଇଁ ନ ରଖି ସେଥିରୁ ବହୁ ବଖରାକୁ ମନ୍ତ୍ରିମଣ୍ଡଳ କାର୍ଯ୍ୟାଳୟ ଏବଂ ଜାତୀୟ ସଂଗ୍ରହାଳୟ ପାଇଁ ଦେଇ ଦେଇଥିଲେ । ତାଙ୍କର ନିଜ ପାଇଁ ମାତ୍ର ଦୁଇଟି ବଖରା ଦରକାର ହେଉଥିଲା । ସେ ରାଷ୍ଟ୍ରପତି ଭବନ ହତା ଭିତରେ ଦେଉଳ ତିଆରି କରି ପ୍ରତ୍ୟହ ପୂଜାପାଠ କରୁଥିଲେ । ବିଳାସୀ ମୋଗଲ ଉପବନକୁ ସର୍ବସାଧାରଣଙ୍କ ପାଇଁ ବର୍ଷକୁ ମାସେ ଖୋଲି ଦେଉଥିଲେ । ପ୍ରତ୍ୟୁଷ ୪ଟାରୁ ଉଠି ସେ ରାତି ଦଶଟା ପର୍ଯ୍ୟନ୍ତ ରାଷ୍ଟ୍ରୀୟ କାର୍ଯ୍ୟରେ ସମସ୍ତ ଅତିବାହିତ କରୁଥିଲେ । ସର୍ବୋଚ୍ଚ ବିଚାରାଳୟର ଦଣ୍ଡିତ ଦୋଷୀକୁ ବ୍ୟକ୍ତିଗତ କ୍ଷମାଦେବା ପାଇଁ ଦରଖାସ୍ତଗୁଡ଼ିକରେ ସେ ନୀତିଗତ ଭାବରେ ନିଷ୍ପତ୍ତି ଗ୍ରହଣ କରୁଥିଲେ । ଆଜୀବନ ଦଳୀୟ ରାଜନୀତିରେ ଆଣ୍ଠୁ ବ୍ୟକ୍ତିତ୍ୱ ଗଠନ କରିଥିଲେ ମଧ୍ୟ ସେ ରାଷ୍ଟ୍ରପତି ପଦବୀକୁ ଦଳୀୟ ରାଜନୀତି ପ୍ରଭାବରୁ

ରକ୍ଷା କରିଥିଲେ । ତଥାପି ଜନ୍ମଭୂମି ବିହାର ପ୍ରତି ତାଙ୍କର ସ୍ୱାଭାବିକ ଦୁର୍ବଳତା ଓ ମମତା ଥିଲା । ଆଧୁନିକ ଶିକ୍ଷାରେ ଉଚ୍ଚ ସ୍ନାତକୋତ୍ତର ଉପାଧି ହାସଲ କରିଥିଲେ ମଧ୍ୟ ସେ ଏହି ଶିକ୍ଷାପଦ୍ଧତିର ସମାଲୋଚକ ଥିଲେ । ମଣିଷର ଜୀବନ ପୂର୍ଣ୍ଣ ବିକାଶ ଓ ତୃପ୍ତି ଆଧୁନିକ ଶିକ୍ଷାର ଲକ୍ଷ୍ୟ ନ ହୋଇ କେବଳ ଏହା ଅମଲା-ଉତ୍ପାଦନରେ ଲାଗିଯାଇଛି ବୋଲି ସେ ଭାବୁଥିଲେ । ଧନ୍ଦାମୂଳକ ଶିକ୍ଷା ଜୀବିକା ସହିତ ଜୀବନର ସମନ୍ୱୟ କରି ସ୍ୱାଧୀନଜୀବୀ ତିଆରି କରିବା ତାଙ୍କର ଲକ୍ଷ୍ୟ ଥିଲା । ସେଥିପାଇଁ ଗ୍ରାମଭିତ୍ତିକ ମୌଳିକ ଶିକ୍ଷାର ପ୍ରବର୍ତ୍ତନ ପାଇଁ ସେ ଆଗ୍ରହୀ ଥିଲେ । ଆଦିବାସୀ ସମାଜକୁ ବିକୃତ ନ କରିବା ପାଇଁ ସେ ଚାହୁଁଥିଲେ । ହରିଜନ ଉନ୍ନୟନ ପାଇଁ ସେ ବହୁ ପଦକ୍ଷେପ ନେଇଛନ୍ତି । ବେକାର ସମସ୍ୟାର ସମାଧାନ ପାଇଁ ଭାରୀଶିଳ୍ପ ପରିବର୍ତ୍ତେ କୁଟୀର ଶିଳ୍ପର ପୁନର୍ଗଠନକୁ ସେ ଗୁରୁତ୍ୱ ଦେଉଥିଲେ । ଆଧୁନିକ ପ୍ରୟୋଗ ବିଜ୍ଞାନକୁ ଭାରତର ପ୍ରାଚୀନ ପରମ୍ପରା ମୂଳଦୁଆରେ ଯଥାଯଥ ଭାବରେ ପ୍ରତିଷ୍ଠିତ କରିବାପାଇଁ ସେ ଚାହୁଁଥିଲେ । ଚିକିତ୍ସା କ୍ଷେତ୍ରରେ ସେ ଏଲୋପ୍ୟାଥିକ ସହିତ ଆୟୁର୍ବେଦ ଏବଂ ୟୁନାନି ପଦ୍ଧତିକୁ ସରକାରୀ ପୃଷ୍ଠପୋଷକତା ମିଳୁ ବୋଲି ଚାହୁଁଥିଲେ । ଆଧୁନିକ ବିଜ୍ଞାନ ଦୂରତାର ବିନାଶ କଲେ ମଧ୍ୟ ବୈଜ୍ଞାନିକମାନଙ୍କୁ ମାନବକଲ୍ୟାଣ ପାଇଁ ଆଧ୍ୟାତ୍ମିକ ବିଶ୍ୱାସରେ ପ୍ରଭାବିତ କରିପାରି ନାହିଁ । ତେଣୁ ବୈଜ୍ଞାନିକ ସମାଜର ବୃଦ୍ଧି ଅନେକ ସମୟରେ ମଣିଷ ତାରଣ ପରିବର୍ତ୍ତେ ମଣିଷ-ମାରଣରେ ପରିଣତ ହୋଇଯାଇଛି ବୋଲି ସେ ଦୁଃଖ ପ୍ରକାଶ କରୁଥିଲେ । ନାଗରିକମାନେ କର୍ତ୍ତବ୍ୟ ଓ ଦାୟିତ୍ୱଜ୍ଞାନ ନ ଥାଇ କେବଳ ଅଧିକାର ପାଇବାର ଦାବୀ କଲେ, ଭାରତୀୟ ଗଣତନ୍ତ୍ରର ଭବିଷ୍ୟତ ବିପନ୍ନ ହେବ ବୋଲି ସେ ଭାବୁଥିଲେ ।

ବୌଦ୍ଧଧର୍ମର ନିର୍ଯ୍ୟାସ ସନାତନ ହିନ୍ଦୁ ଧର୍ମରେ ମିଶିଯାଇଛି ବୋଲି ସେ ବିଶ୍ୱାସ କରୁଥିଲେ । ଧର୍ମ ବିଶ୍ୱାସରେ ସେ ବାସ୍ତବରେ ବୌଦ୍ଧ ମତାବଲମ୍ବୀ ଥିଲେ । ମାନସିକ ଦୃଢ଼ତା ସହିତ ଅଭ୍ୟାସ ଏବଂ ଆତ୍ମସଂଯମ ଦ୍ୱାରା ଅହିଂସାର ଶକ୍ତି ହିଂସାଠାରୁ ଗରୀୟାନ୍ ବୋଲି ସେ ଜାଣିଥିଲେ ।

ଅହିଂସା ଓ ସହନଶୀଳତା ସାମାଜିକ ବନ୍ଧନର ହେତୁ । ସେଥିପାଇଁ ଆନ୍ତର୍ଜାତିକ ରାଜନୀତିରେ ଅହିଂସା ନୀତିର ପ୍ରୟୋଗ ପାଇଁ ସେ ସର୍ବଦା ମୁକ୍ତ କରୁଥିଲେ ।

ବାସ୍ତବବାଦୀ ରାଜନୀତିଜ୍ଞ ହିସାବରେ ସେ ସମବାୟ କୃଷି ପଦ୍ଧତିର ଘୋର ବିରୋଧୀ ଥିଲେ । ଏହି ପଦ୍ଧତି ଦ୍ୱାରା କୃଷୀର ଜମିପ୍ରତି ମମତା କମିଯିବ ଏବଂ ଫଳରେ ଉତ୍ପାଦନ ମାତ୍ରା ହ୍ରାସ ପାଇଯିବ ବୋଲି ସେ ଭାବୁଥିଲେ । ସମବାୟ ଆନ୍ଦୋଳନକୁ ଶାସନ କଳର ପ୍ରଭାବରୁ ମୁକ୍ତ ରଖି ଏକ ସ୍ୱାଧୀନ ଗଣତାନ୍ତ୍ରିକ ଆନ୍ଦୋଳନ ହିସାବରେ ସଙ୍ଗଠିତ କରିବା ଉଚିତ ବୋଲି ସେ କହୁଥିଲେ । ସେ ସମାଜ, ଶାସନ ଓ ଜନ-ଜୀବନରେ ଦୁର୍ନୀତିର ଘୋର ବିରୋଧୀ । ସେ ନିଜ ନୀତିରେ ଦୃଢ଼ ରହିଲେ ମଧ୍ୟ ନିଜର ସ୍ୱାର୍ଥ ପାଇଁ କାହାକୁ କଷ୍ଟ ଦେଉ ନ ଥିଲେ । କ୍ଷମତା, ସମ୍ମାନ ଓ ପଦବୀର ମୋହ ତାଙ୍କର ନ ଥିଲା । ସମ୍ପତ୍ତି ପ୍ରତି ଦୁର୍ବଳତା ତ୍ୟାଗ କରିପାରିଲେ ଆନନ୍ଦ ମିଳେ ବୋଲି ସେ ଜାଣିଥିଲେ । ସେ ଗଭୀର ଧର୍ମବିଶ୍ୱାସୀ ଏବଂ ରାମାୟଣ ତାଙ୍କର ଧର୍ମଗ୍ରନ୍ଥ । କିନ୍ତୁ ସେ ଅନ୍ୟ ଧର୍ମର ମତକୁ ନାପସନ୍ଦ କରୁ ନ ଥିଲେ । ଦୋଷ ସ୍ୱୀକାର କରିଯାଇ ମନ ନିର୍ମଳ ରଖିବା ତାଙ୍କର ନୀତି ଥିଲା । ସେ ଉଚ୍ଚ ଶିକ୍ଷିତ ଥିଲେ ମଧ୍ୟ ନିରକ୍ଷର ମଣିଷକୁ ଘୃଣା କରୁ ନ ଥିଲେ । ସାଧୁମାନଙ୍କୁ ସେ ଭକ୍ତି କରୁଥିଲେ । ପରଲୋକରେ ଗୋଲକଧାମ ପରିବର୍ତ୍ତେ ଏହି ଧୂଳି-ଧୂସରିତ ଧରଣୀକୁ ଗୋଲକଧାମରେ ପରିଣତ କରିବା ପାଇଁ ସେ ଚାହୁଁଥିଲେ ।

ରଚନାତ୍ମକ କାର୍ଯ୍ୟରେ ସଦା ଆଗ୍ରହୀ ଏହି ଜନ ନେତା ସାହିତ୍ୟ ସାଧନା ମଧ୍ୟ କରିଛନ୍ତି । ତାଙ୍କ ସାହିତ୍ୟ କୃତି ସ୍ୱଳ୍ପ ହେଲେ ମଧ୍ୟ ଗୁଣାତ୍ମକ ଦୃଷ୍ଟିରୁ ଉଚ୍ଚକୋଟୀର । ସେ ମୁଖ୍ୟତଃ ରାଜନୈତିକ ସାହିତ୍ୟ ଉଦାର ଦୃଷ୍ଟିଭଙ୍ଗୀ ନେଇ ଲେଖିଛନ୍ତି । ତାଙ୍କର ରାଜନୈତିକ ଜୀବନ କାହାଣୀକୁ ସେ 'ମହାତ୍ମା ଗାନ୍ଧୀଙ୍କ ଚରଣ ତଳେ' ନାମରେ ନାମିତ କରିଛନ୍ତି । ମାତୃଭାଷାରେ 'ବ୍ରଜ' ଭାଷା ଛଡ଼ା ସେ ରାଷ୍ଟ୍ରଭାଷା ହିନ୍ଦୀ, ଇଂରାଜୀ, ସଂସ୍କୃତ, ବଙ୍ଗଳା ଏବଂ ଓଡ଼ିଆ ଭାଷାରେ ସୁପଣ୍ଡିତ ଥିଲେ । ସେ ବହି ବାବଦକୁ

ବର୍ଷକୁ ପ୍ରାୟ ୨୫ ହଜାର ଟଙ୍କା ରୟାଲଟି ଆକାରରେ ପାଉଥିଲେ । ଏହି ଅର୍ଥ ସେ ଗଠନ କରିଥିବା 'ରାଜେନ୍ଦ୍ର ପ୍ରସାଦ ଗ୍ରନ୍ଥାବଳୀ ଟ୍ରଷ୍ଟ' ତରଫରୁ ଭାରତୀୟ ନାରୀ ସମାଜର କଲ୍ୟାଣ ପାଇଁ ବିନିଯୋଗ କରିଥାନ୍ତି । ମାତ୍ର ଜନ-ଜୀବନରେ ବ୍ୟସ୍ତ ରହି ସେ ପାରିବାରିକ ଦାୟିତ୍ୱ ସମ୍ପୂର୍ଣ୍ଣରୂପେ ଭୁଲିଇ ପାରୁ ନ ଥିଲେ । ପରିବାରର ମୁରବୀ ଭଉଣୀ ଭଗବତୀ ଦେବୀ ସେଥିପାଇଁ ତାଙ୍କୁ ବହୁ ସମୟରେ ଦୋଷ ଦିଅନ୍ତି । ଧର୍ମପତ୍ନୀ ରାଜବଂଶୀ ଦେବୀ ଦେଶସେବୀ ସ୍ୱାମୀଙ୍କ ମନୋବୃତ୍ତିର ଅନୁସାରିଣୀ ଥିଲେ । ଦୁଇ ପୁତ୍ର ମୃତ୍ୟୁଞ୍ଜୟ ଏବଂ ଧନଞ୍ଜୟଙ୍କ ପ୍ରତି ପିତୃସୁଲଭ ଯତ୍ନରେ ସେ ଅବହେଳା କରିଛନ୍ତି । ବ୍ୟକ୍ତିଗତ ସ୍ୱାର୍ଥଠାରୁ ସମୂହ ସ୍ୱାର୍ଥ ପାଇଁ ସେ ଲାଗିପଡ଼ୁଥିଲେ । ୧୯୪୭ ମସିହାରେ ପାଟନା ସାମ୍ପ୍ରଦାୟିକ ଗୋଳମାଳବେଳେ ପୁତ୍ରବଧୂର ବିୟୋଗ କି ୧୯୬୦ ମସିହା ସାଧାରଣତନ୍ତ୍ର ଦିବସର ପୂର୍ବଦିନ ରାତିରେ ଭଗିନୀ ଭଗବତୀଙ୍କ ବିୟୋଗ ତାଙ୍କୁ ସମୂହ କର୍ତ୍ତବ୍ୟରୁ ବିଚ୍ୟୁତ କରି ନ ଥିଲା । ସମୂହ କର୍ତ୍ତବ୍ୟ ପାଳନ ପରେ ସେ ପାରିବାରିକ କର୍ତ୍ତବ୍ୟ ପାଳନ କରିଥିଲେ । ରାଜନୀତିକୁ ଧର୍ମବିଶ୍ୱାସ ପ୍ରଭାବିତ କରୁ ବୋଲି ସେ ଚାହୁଁଥିଲେ ।

କେତେକ ସମାଲୋଚକଙ୍କ ମତରେ କାୟସ୍ଥ କୁଳରେ ଜନ୍ମହୋଇ ମଧ୍ୟ ରାଜେନ୍ଦ୍ର ପ୍ରସାଦ ରୁଚିରେ ବ୍ରାହ୍ମଣ ଥିଲେ । ମାତ୍ର ବ୍ରାହ୍ମଣ ବଂଶୋଦ୍ଭବ ଜବାହରଲାଲଙ୍କ ରୁଚି କାୟସ୍ଥ ସୁଲଭ ଥିଲା । କ୍ଷମତାଧର ଜବାହରଲାଲ ସମାସୀନଙ୍କ ପରିବର୍ତ୍ତେ ଅନୁଗତ ଅନୁରକ୍ତମାନଙ୍କର ପୃଷ୍ଠପୋଷକତା କରୁଥିଲେ; ତେଣୁ ଶେଷ ବେଳକୁ ସର୍ଦ୍ଦାର ପଟେଲଙ୍କ ସହ ଅଧିକାଂଶ କ୍ଷେତ୍ରରେ ନେହେରୁଙ୍କ ମତଭେଦ ତୀବ୍ର ହୋଇଥିଲା । ସେଥିପାଇଁ ବନ୍ଧୁବତ୍ସଳ ରାଜେନ୍ଦ୍ର ପ୍ରସାଦ ତାଙ୍କର ପରମ ବନ୍ଧୁ ଏବଂ ତତ୍କାଳୀନ ଉପପ୍ରଧାନମନ୍ତ୍ରୀ ସର୍ଦ୍ଦାର ବଲ୍ଲଭଭାଇ ପଟେଲଙ୍କ ୧୯୫୦ ମସିହା ଡିସେମ୍ବର ୧୫ ତାରିଖରେ ପରଲୋକ ସମ୍ବାଦରେ ବ୍ୟଥିତ ହୋଇ ତାଙ୍କ ଅନ୍ତ୍ୟେଷ୍ଟି କ୍ରିୟାରେ ଯୋଗଦେବା ପାଇଁ ସେ ବମ୍ବେ ଯାଇଥିଲେ । ଏଥିପାଇଁ ପ୍ରଧାନମନ୍ତ୍ରୀ ଜବାହରଲାଲଙ୍କ ନିଷେଧ ଅନୁରୋଧକୁ ସେ ଭ୍ରୂକ୍ଷେପ କରି ନ ଥିଲେ ।

ଭାରତୀୟ ସମ୍ବିଧାନରେ ରାଷ୍ଟ୍ରପତି ଓ ପ୍ରଧାନମନ୍ତ୍ରୀଙ୍କ କ୍ଷମତା ନେଇ 'ଭାରତୀୟ ଆଇନ ସଂସ୍ଥାନ'ର ରାଷ୍ଟ୍ରପତି ରାଜେନ୍ଦ୍ର ପ୍ରସାଦ ପ୍ରଶ୍ନ ଉଠାଇଥିଲେ । ଭାରତୀୟ ସମ୍ବିଧାନରେ ଦୁଇଟି ଭିନ୍ନମୁଖୀ ସମ୍ବିଧାନର ଅପୂର୍ବ ମିଳନ ଘଟିଛି । ସାଧାରଣ ଅବସ୍ଥାରେ ରାଷ୍ଟ୍ରସଂଘୀୟ ଧାରାରେ ଭାରତର କେନ୍ଦ୍ର ଓ ରାଜ୍ୟ ଶାସନ ଚାଲିବାର କଥା, ମାତ୍ର ଜରୁରୀକାଳୀନ ପରିସ୍ଥିତି ହେଲେ କେନ୍ଦ୍ର ସର୍ବକ୍ଷମତାପନ୍ନ ହୋଇଉଠେ । ପୁନଶ୍ଚ ରାଷ୍ଟ୍ରପତି କେନ୍ଦ୍ର ସମେତ ଭାରତର ସବୁ ଅଙ୍ଗ-ରାଷ୍ଟ୍ରର ରାଷ୍ଟ୍ରପତି । ତାଙ୍କ ନିର୍ବାଚନରେ ଉଭୟ କେନ୍ଦ୍ର ପ୍ରତିନିଧି ଏବଂ ରାଜ୍ୟ ପ୍ରତିନିଧି ଭାଗ ନେଇଥାନ୍ତି । ତାଙ୍କର ବ୍ୟକ୍ତିଗତ ପ୍ରତିନିଧି ରୂପେ ରାଜ୍ୟପାଳମାନେ ରାଜ୍ୟଶାସନର ଦାୟିତ୍ୱ ନିଅନ୍ତି । ରାଷ୍ଟ୍ରପତି ପ୍ରଧାନମନ୍ତ୍ରୀଙ୍କୁ ନିଯୁକ୍ତ କରନ୍ତି ଏବଂ ପ୍ରଧାନମନ୍ତ୍ରୀଙ୍କ ପରାମର୍ଶ କ୍ରମେ କେନ୍ଦ୍ର ମନ୍ତ୍ରିମଣ୍ଡଳର ଅନ୍ୟ ମନ୍ତ୍ରୀମାନଙ୍କୁ ନିଯୁକ୍ତ କରନ୍ତି । ପ୍ରଧାନମନ୍ତ୍ରୀଙ୍କ ପରାମର୍ଶରେ କେନ୍ଦ୍ର ଶାସନ ରାଷ୍ଟ୍ରପତିଙ୍କ ନାମରେ ଚାଲେ । କିନ୍ତୁ ରାଜ୍ୟ ଶାସନ ବିଷୟରେ କ'ଣ ପ୍ରଧାନମନ୍ତ୍ରୀ ତାଙ୍କୁ ପରାମର୍ଶ ଦେଇପାରିବେ । ହୁଏତ କେନ୍ଦ୍ର ଶାସନ ଏବଂ ରାଜ୍ୟଶାସନ ବ୍ୟତୀତ ଅବଶିଷ୍ଟ କାର୍ଯ୍ୟକ୍ରମରେ ପ୍ରଧାନମନ୍ତ୍ରୀ ପରାମର୍ଶ ଦେବେ । ଏହାଛଡ଼ା ପ୍ରଧାନମନ୍ତ୍ରୀ ପାର୍ଲାମେଣ୍ଟରେ ସଂଖ୍ୟା ଗରିଷ୍ଠତା ହରାଇଲେ ରାଷ୍ଟ୍ରପତି ପାର୍ଲାମେଣ୍ଟକୁ ଭାଙ୍ଗିଦେବେ; କିନ୍ତୁ ବିନା ପ୍ରଧାନମନ୍ତ୍ରୀରେ ରାଷ୍ଟ୍ରପତି କେନ୍ଦ୍ରଶାସନ ଚଳାଇବା ସମ୍ବିଧାନ ଅନୁସାରେ ସମ୍ଭବ ନୁହେଁ ।

ରାଷ୍ଟ୍ରର ମୁଖ୍ୟଙ୍କୁ ଶାସନର ମୁଖ୍ୟଙ୍କ ପରାମର୍ଶ ଅନୁସାରେ ଚଳିବାକୁ ବାଧ୍ୟ ବୋଲି ସମ୍ବିଧାନ ଓ ରାଜନୈତିକ ପରମ୍ପରାର ତଦନୁରୂପ ବ୍ୟାଖ୍ୟା କରିବା ସଙ୍ଗତ କି ? ଭାରତୀୟ ସମ୍ବିଧାନ ସଭାର ଅଧ୍ୟକ୍ଷ ଏବଂ ଭାରତୀୟ ସାଧାରଣତନ୍ତ୍ରର ପ୍ରଥମ ରାଷ୍ଟ୍ରପତି ହିସାବରେ ରାଜେନ୍ଦ୍ର ପ୍ରସାଦ ଏହି ସମସ୍ୟାର ବିଚାର ଆଲୋଚନା ପାଇଁ ଭାରତୀୟ 'ଆଇନ ସଂସ୍ଥାନ'ର କୃତୀ ଆଇନ ବିଶାରଦମାନଙ୍କୁ ନିବେଦନ କରିଥିଲେ । ରାଜନୀତି ଜୀବନର ସହଯୋଗୀ ଏବଂ ମୁକ୍ତି ଆନ୍ଦୋଳନର ଅନ୍ୟତମ ବରେଣ୍ୟ ସେନାପତି ପ୍ରଧାନମନ୍ତ୍ରୀ ଜବାହରଲାଲଙ୍କ ପ୍ରତି ନୀତିଗତ ସ୍ତରରୁ ସେ ଏପରି ପ୍ରଶ୍ନ ଉଠାଇଥିଲେ । ସେ ପ୍ରଶ୍ନ ଏବେ ମଧ୍ୟ ଅସମାଧିତ ରହିଯାଇଛି ।

ସେତେବେଳେ କିନ୍ତୁ ଭାରତର ବନ୍ଧୁ ରାଜଗୋପାଳଙ୍କ ଏହାକୁ ରାଜେନ୍ଦ୍ର ପ୍ରସାଦଙ୍କ ବ୍ୟକ୍ତିଗତ କ୍ଷମତା ଲୋଭ ବୋଲି ସନ୍ଦେହ ପ୍ରକାଶ କରିଥିଲେ; କିନ୍ତୁ ଏପରି ମତ ଦେବାର ଅଳ୍ପ କାଳପରେ ଖ୍ରୀ. ୧୯୬୨ରେ ତୃତୀୟ ଲୋକସଭା ପାଇଁ ନିର୍ବାଚନ ହେଲା । ତା' ପରେ ପରେ ଅନୁଷ୍ଠିତ ରାଷ୍ଟ୍ରପତି ନିର୍ବାଚନରେ ରାଜେନ୍ଦ୍ର ପ୍ରସାଦ ପ୍ରାର୍ଥୀ ହେଲେ ନାହିଁ । ତାଙ୍କ ରାଷ୍ଟ୍ରପତି କାଳ ମଧ୍ୟରେ ଉପରାଷ୍ଟ୍ରପତି ହିସାବରେ କାର୍ଯ୍ୟ କରି ଆସିଥିବା ଦାର୍ଶନିକ ରାଧାକୃଷ୍ଣନ୍‌ଙ୍କୁ ନୂତନ ରାଷ୍ଟ୍ରପତି ହିସାବରେ ସେ ସମର୍ଥନ କରିଗଲେ । ଏହି ଦୃଷ୍ଟାନ୍ତରୁ କ୍ଷମତା ପ୍ରତି ତାଙ୍କର ଅନାସକ୍ତି ପ୍ରମାଣିତ ହୁଏ ।

ବିଦାୟୀ ରାଷ୍ଟ୍ରପତି ହିସାବରେ ନୂତନ ରାଷ୍ଟ୍ରପତି ରାଧାକୃଷ୍ଣନ୍ ଏବଂ କେନ୍ଦ୍ର ସରକାର ତାଙ୍କର ବିଦାୟ ସମ୍ବର୍ଦ୍ଧନା ମହାସମାରୋହରେ ପାଳନ କଲେ । ତାଙ୍କ ନାମରେ ସ୍ୱତନ୍ତ୍ର ଡାକଟିକଟ ପ୍ରଚଳନ କରାଗଲା । ରାଷ୍ଟ୍ରପତି ରାଧାକୃଷ୍ଣନ୍ ଡକ୍ଟର ରାଜେନ୍ଦ୍ର ପ୍ରସାଦଙ୍କୁ 'ଭାରତରତ୍ନ' ଉପାଧିରେ ଭୂଷିତ କଲେ । ଭାରତର ପ୍ରଥମ ରାଷ୍ଟ୍ରପତି ହିସାବରେ ସିଏ ୧୯୫୪ ମସିହାରେ ଚକ୍ରବର୍ତ୍ତୀ ରାଜଗୋପାଳାଚାରୀ, ଦାର୍ଶନିକ ରାଧାକୃଷ୍ଣନ, ବୈଜ୍ଞାନିକ, ଚନ୍ଦ୍ରଶେଖର ଭେଙ୍କଟରମଣ, ୧୯୫୫ ମସିହାରେ ଦାର୍ଶନିକ ଭଗବାନ ଦାସ, ଇଞ୍ଜିନିୟର ବିଶ୍ୱେଶ୍ୱରାୟା, ପ୍ରଧାନମନ୍ତ୍ରୀ ଜବାହରଲାଲ ନେହେରୁ, ୧୯୫୭ ମସିହାରେ ପଣ୍ଡିତ ଗୋବିନ୍ଦବଲ୍ଲଭ ପନ୍ଥ, ୧୯୫୮ ମସିହାରେ ଡକ୍ଟର ଡ଼ି. କେ. କର୍ଭେ, ୧୯୬୧ ମସିହାରେ ଡକ୍ଟର ବିଧାନଚନ୍ଦ୍ର ରାୟ ଏବଂ ପୁରୁଷୋତ୍ତମ ଦାସ ଟଣ୍ଡନ ଭଳି ଦଶଜଣ ଭାରତମାତାର ବରପୁତ୍ରଙ୍କୁ ରାଷ୍ଟ୍ରର ସର୍ବୋଚ୍ଚ ସମ୍ମାନ 'ଭାରତରତ୍ନ' ଉପାଧି ପ୍ରଦାନ କରିଥିଲେ, ସିଏ ୧୯୬୨ ମସିହାରେ ରାଷ୍ଟ୍ରପତି ପଦରୁ ବିଦାୟ ନେବାପରେ ତାଙ୍କଦ୍ୱାରା 'ଭାରତରତ୍ନ'ରେ ବିଭୂଷିତ ନବନିର୍ବାଚିତ ରାଷ୍ଟ୍ରପତି ରାଧାକୃଷ୍ଣନ୍‌ଙ୍କଠାରୁ ଉକ୍ତ ଉପାଧି ବିନା ଦ୍ୱିଧାରେ ଗ୍ରହଣ କଲେ । ଅବଶ୍ୟ ତାଙ୍କ ପରେ ୧୯୬୩ ମସିହାରେ ଡକ୍ଟର ଜାକିର ହୁସେନ୍, ଡକ୍ଟର ପି. ଭି. କାଣ୍ଟେ, ୧୯୬୬ ମସିହାରେ ଲାଲବାହାଦୁର ଶାସ୍ତ୍ରୀ, ୧୯୭୧, ମସିହାରେ ଇନ୍ଦିରା ଗାନ୍ଧୀ, ୧୯୭୫ ମସିହାରେ ଭି. ଭି. ଗିରି, ୧୯୭୬ ମସିହାରେ କେ. କାମରାଜ୍ 'ଭାରତରତ୍ନ' ଉପାଧି ଲାଭ କରିଛନ୍ତି । ରାଷ୍ଟ୍ରସେବାରେ ରାଷ୍ଟ୍ରୀୟ ସ୍ୱୀକୃତିର

ସର୍ବୋଚ୍ଚ ଏହି ଉପାଧି ପ୍ରଦାନ ବ୍ୟବସ୍ଥାକୁ ୧୯୭୭ ଲୋକସଭା ନିର୍ବାଚନ ପରେ ପ୍ରଧାନମନ୍ତ୍ରୀ ମୋରାରଜୀ ଦେଶାଇ ଉଠାଇ ଦେଇଥିଲେ ମଧ୍ୟ ଏହି ଉପାଧିପ୍ରାପ୍ତ ବରପୁତ୍ରମାନଙ୍କର ଜନ-ଜୀବନର ଅବଦାନକୁ ଭାରତର ରାଷ୍ଟ୍ର ଓ ସମାଜ ଭୁଲିବାର ନୁହେଁ ।

ରାଜେନ୍ଦ୍ର ପ୍ରସାଦ ୧୯୬୨ ମସିହାରେ ରାଷ୍ଟ୍ରପତି ପଦରୁ ଅବ୍ୟାହତି ନେଇ ପାଟନାରେ 'ସଦାକତ ଆଶ୍ରମ'କୁ ପୁନର୍ଗଠିତ କରି ଶେଷ ଜୀବନ କାଟିଲେ । ତାଙ୍କ ଶାସନର ଶେଷ କାଳରେ ୧୯୬୦ ମସିହାରେ ପାକିସ୍ଥାନର ରାଜଧାନୀ ରାଓଲପିଣ୍ଡିରେ ସିନ୍ଧୁ ନଦୀର ଜଳ ବଣ୍ଟନ ନେଇ ଭାରତ ପାକିସ୍ଥାନର ଚୁକ୍ତି ସ୍ୱାକ୍ଷରିତ ହୋଇଥିଲା । ୧୯୬୧ ମସିହା ଡିସେମ୍ବର ୧୮ ତାରିଖରେ ପର୍ତ୍ତୁଗୀଜ୍‌ମାନଙ୍କ କବଳରୁ ଗୋଆ ମୁକ୍ତି ଲଭ କରି ସ୍ୱାଧୀନ ଭାରତରେ ମିଶି ଯାଇଥିଲା । ସେ ଅବସର ନେବାର ଅଳ୍ପ କାଳ ପୂର୍ବରୁ ୧୯୬୨ ମସିହାର ଅକ୍ଟୋବର ୨୦ ତାରିଖରେ ଚୀନ୍ ଭାରତ ଆକ୍ରମଣ କଲା । ଚୀନ୍‌ର ଆକ୍ରମଣକୁ ପ୍ରତିହତ କରିବାରେ ଭାରତୀୟ ପ୍ରତିରକ୍ଷା ବ୍ୟବସ୍ଥା ଅସମର୍ଥ ହୋଇପଡ଼ିବାରୁ ପୂର୍ବତନ ରାଷ୍ଟ୍ରପତି ଏବଂ ଆଜୀବନ ଦେଶ ସେବୀ ରାଜେନ୍ଦ୍ର ପ୍ରସାଦ ମର୍ମାହତ ହୋଇପଡ଼ିଲେ । ୧୯୬୩ ମସିହା ଫେବୃଆରୀ ୧୪ ତାରିଖ ଦିନ ଭାରତରତ୍ନ ରାଜେନ୍ଦ୍ର ପ୍ରସାଦ ପାଟନାର ସଦାକତ ଆଶ୍ରମରେ ଶେଷ ନିଃଶ୍ୱାସ ତ୍ୟାଗ କଲେ । ତାଙ୍କ ମୃତ୍ୟୁରେ ୭୯ ବର୍ଷର ଦୀର୍ଘ କର୍ମମୟ ଜୀବନର ଅବସାନ ଘଟିଲା । ପୂର୍ଣ୍ଣ ରାଷ୍ଟ୍ରୀୟ ମର୍ଯ୍ୟାଦା ସହକାରେ ଭାରତୀୟ ସେନାବାହିନୀଦ୍ୱାରା ତାଙ୍କ ମରଦେହକୁ ଚିତାଗ୍ନି ନିକଟରେ ସମର୍ପଣ କରାଗଲା ।

ନେତୃତ୍ୱ ପାଇଁ ସେ କଦାପି ଜବାହରଲାଲ, ସର୍ଦ୍ଦାର ପଟେଲ ବା ରାଜାଜୀ ପ୍ରଭୃତି କୌଣସି ନେତାଙ୍କ ସହିତ ପ୍ରତିଦ୍ୱନ୍ଦ୍ୱିତା କରି ନାହାନ୍ତି । ସହନଶୀଳ ଗୁଣରେ ସମୂହର ଅଗ୍ରଗତି ପାଇଁ ସେ ସର୍ବଦା ନମ୍ର ଭୂମିକା ଗ୍ରହଣ କରି ଆସିଛନ୍ତି । ପରମ୍ପରାର ନବୀକରଣରେ ଭାରତୀୟ ଜାତୀୟବାଦ ପ୍ରତିଷ୍ଠା ପାଇଁ ସେ ଆଜୀବନ ସାଧନା କରିଆସିଛନ୍ତି । ଭାରତୀୟ ସ୍ୱାଧୀନତା ପ୍ରାପ୍ତିର ପ୍ରାକ୍‌କାଳରେ ଆଧୁନିକ ଶିକ୍ଷାଭିମାନୀମାନଙ୍କ ଉନ୍ମାଦନାରେ ଏ ଦେଶରେ ପାଶ୍ଚାତ୍ୟ ରାଷ୍ଟ୍ରାଦର୍ଶ, ଚାଲିଚଳଣ, ଆଦବ୍

କାସ୍ମିଦାର ଭୂରିଭୂରି ମହାସ୍ୱପ୍ନ କରାଯାଇଥିଲେ ମଧ୍ୟ, ପରବର୍ତ୍ତୀ ନେତୃତ୍ୱ ପଣ୍ଡିତ ନେହରୁଙ୍କ ସ୍ୱୀକାର କରି ନ ଥିଲେ । ପୁନର୍ବାର ମହାତ୍ମା ଗାନ୍ଧୀଙ୍କ ଆଦର୍ଶ, ରାଜେନ୍ଦ୍ର ପ୍ରସାଦଙ୍କ ନିଷ୍ଠା ଓ ସର୍ଦ୍ଦାର ପଟେଲଙ୍କ ଆଚରଣ ଭାରତର ଧ୍ୟେୟ ହେବାକୁ ଯାଉଛି । ଏ ଦେଶର ପରମ୍ପରାକୁ ପୂରାପୂରି କେହି ଅସ୍ୱୀକାର କରିପାରିବେ ନାହିଁ । ରାଜେନ୍ଦ୍ର ପ୍ରସାଦଙ୍କ ମହାପ୍ରୟାଣର ୧୫ ବର୍ଷ ଭିତରେ ତାଙ୍କର କର୍ମଭୂମି ବିହାରରୁହିଁ ଜନ ଜାଗରଣ ସଙ୍ଗଠିତ ହୋଇ ଭାରତର ରାଜନୀତିରେ ନୂତନ ଅଧ୍ୟାୟ ସୃଷ୍ଟି କରିଥିଲା । ତାଙ୍କର ସମକାଳୀନ ଏବଂ ସ୍ନେହଭାଜନ ଜୟପ୍ରକାଶଙ୍କ ପରିବର୍ତ୍ତିତ ପରିସ୍ଥିତିରେ ଭାରତର ନେତୃତ୍ୱ ନେବାକୁ ପଡ଼ିଥିଲା । ରାଜେନ୍ଦ୍ର ପ୍ରସାଦ ଏବଂ ତାଙ୍କର ବନ୍ଧୁ ପ୍ରବୀଣ କଂଗ୍ରେସ ନେତା ବ୍ରଜକିଶୋର ପ୍ରସାଦ ପ୍ରଥମେ ଜୟପ୍ରକାଶଙ୍କୁ ବିହାର ଭୂମିକମ୍ପ ପରେ ଚାଲିଥିବା ରିଲିଫ୍ କାର୍ଯ୍ୟର ମୁଖ୍ୟ ଦାୟିତ୍ୱ ଦେଇ ତାଙ୍କୁ ପ୍ରତ୍ୟକ୍ଷ ଜନଜୀବନରେ ଯୋଗ ଦେବାର ସୁଯୋଗ ଦେଇଥିଲେ ।

ଅବଶ୍ୟ ଆଧୁନିକ ଉତ୍କଳରେ ତାଙ୍କ ବିରୁଦ୍ଧରେ ବହୁ ଅଭିଯୋଗ ରହିଛି । ବଙ୍ଗ ବିହାର-ଓଡ଼ିଶା ପ୍ରେସିଡେନ୍ସିରୁ ବିହାର ଓଡ଼ିଶା ୧୯୧୨ ମସିହାରେ ପୃଥକ୍ ହେଲା । ୧୯୩୬ ମସିହାରେ ବିହାର-ଓଡ଼ିଶାରୁ ଓଡ଼ିଶା ସ୍ୱତନ୍ତ୍ର ପ୍ରଦେଶ ରୂପେ ପ୍ରତିଷ୍ଠିତ ହେଲା । ଏହି ବିକଳାଙ୍ଗ ଓଡ଼ିଶାକୁ ପୂର୍ଣ୍ଣାଙ୍ଗ କରିବା ପାଇଁ ତାଙ୍କ ସହଯୋଗ ଓ ନେତୃତ୍ୱ ପାଇଥିଲେ ଓଡ଼ିଶାର ଏହି ଅସମ୍ପୂର୍ଣ୍ଣ କାର୍ଯ୍ୟ ଅକ୍ଳେଶରେ ସମ୍ପୂର୍ଣ୍ଣ ହୋଇପାରିଥାନ୍ତା । ଓଡ଼ିଶାର ରାଜନୀତି ସହିତ ସେ ଓତଃପ୍ରୋତ ଭାବରେ ସମ୍ପୃକ୍ତ ଥିଲେ । ତାଙ୍କର ବହୁ ଆତ୍ମୀୟସ୍ୱଜନ ଚିରକାଳ ଲାଗି ଉତ୍କଳବାସୀ ହୋଇଛନ୍ତି । ସତ୍ୟବାଦୀ-ଗୋଷ୍ଠୀର ସାଧକମାନଙ୍କୁ ସେ ଶ୍ରଦ୍ଧା କରନ୍ତି ଏବଂ ସେ 'ଅଲକା' ଗୋଷ୍ଠୀର ବନ୍ଧୁ ଓ ଦାର୍ଶନିକ ଥିଲେ । 'ଅଲକା' ଗୋଷ୍ଠୀର ନେତା ଭାଗୀରଥିଙ୍କ ସହିତ ତାଙ୍କର ଗୁରୁ ଶିଷ୍ୟର ସମ୍ପର୍କ ଥିଲା । ବର୍ତ୍ତମାନର ଓଡ଼ିଶାର ଏହି ଝଞ୍ଜାବର୍ତ୍ତ ସତ୍ତ୍ୱେ ଡ଼କ୍ଟର ରାଜେନ୍ଦ୍ର ପ୍ରସାଦଙ୍କ ଜୀବନୀ ଭାରତବର୍ଷର ଆଠ ଦଶକର ମୁକ୍ତି ସଂଗ୍ରାମର ଇତିହାସ । ସେ ଭାରତର ଅନ୍ୟତମ ଯଶସ୍ୱୀ ବରପୁତ୍ର ।

ଆଧୁନିକ ଭାରତୀୟ ସାହିତ୍ୟରେ ଓଡ଼ିଆ ସାହିତ୍ୟ ପ୍ରତିଷ୍ଠିତ ହେବା ପ୍ରତ୍ୟେକ ଓଡ଼ିଆଭାଷୀଙ୍କର ବହୁ ଦିନରୁ ସ୍ୱପ୍ନ ଥିଲା । ଆମ ପ୍ରକାଶିତ ଉପନ୍ୟାସ ଭାରତୀୟ ଜ୍ଞାନପୀଠ ପୁରସ୍କାର ପାଇବା ପରେ ଆମର ସେ ସ୍ୱପ୍ନ ସାର୍ଥକ ହୋଇଛି । ବର୍ତ୍ତମାନ ଓଡ଼ିଆ ସାହିତ୍ୟକୁ ବିଶ୍ୱ ଦରବାରରେ ପହଞ୍ଚାଇବାକୁ ଆମ୍ଭମାନଙ୍କର ସମୂହ ଉଦ୍ୟମ ହେବା ଆବଶ୍ୟକ ।

ଓଡ଼ିଶାରେ ପ୍ରତିଭାର ଅଭାବ ନାହିଁ; କିନ୍ତୁ ସାହିତ୍ୟ ବିକଶିତ ହେବାର କ୍ଷେତ୍ର ସୃଷ୍ଟି କରିବାରେ ବହୁ ଅନ୍ତରାୟ ଉପୁଜୁଛି । ପ୍ରକାଶକମାନେ କେବଳ ଲାଭ ପ୍ରତି ଦୃଷ୍ଟି ନ ଦେଇ ନବ୍ୟନୂତନ ପ୍ରତିଭାକୁ ଶ୍ରଦ୍ଧାର ସହିତ ଆବାହନ ଜଣାଇଲେ ବିଭିନ୍ନ ପ୍ରତିଭାର ସମବେତ ଦାନରେ ଓଡ଼ିଆ ସାହିତ୍ୟ ବୈଭବବନ୍ତ ହେବା ସୁନିଶ୍ଚିତ । ବିଶ୍ୱ ସାହିତ୍ୟର ଇତିହାସରେ ଏହା ଉତ୍ତମରୂପେ ପରୀକ୍ଷିତ ।

ଗଭୀର ଆତ୍ମବିଶ୍ୱାସ ନେଇ ଏ ଦିଗରେ ସେତୁବନ୍ଧର ନିର୍ମାଣରେ ଗୁଣ୍ଡୁଚିର ସହଯୋଗ ନ୍ୟାୟରେ ଆମେ ପ୍ରୟତ୍ନ ଆରମ୍ଭ କରିଛୁ । ଆନ୍ତରିକ ସହିଚ୍ଛାର ମିଳନରେ ଅଂଶ ଗ୍ରହଣ କରିବାକୁ ପ୍ରସ୍ତୁତ ରହି ଅନାଗତ ଭବିଷ୍ୟତର ସୁନ୍ଦର ଓ ବାସ୍ତବ ମାନଚିତ୍ର ଆଙ୍କିବାକୁ ଆମେ ପ୍ରତିଜ୍ଞାବଦ୍ଧ ।

